# ସ୍ମରଣିକା

ମହାରାଜା ସୋମନାଥ ସିଂହ ଜଗଦେବଙ୍କ ୨୦୮ତମ ଜୟନ୍ତୀ ଉପଲକ୍ଷେ

(ତା.୧୧.୦୮.୨୦୦୮)



**ସଂପାଦକ ମଣ୍ଡଳୀ :**

ଅଧ୍ୟାପକ : ଡ଼ଃ ଜୟାନନ୍ଦ ନାୟକ

ଅଧ୍ୟକ୍ଷ ଶ୍ରୀ ବଂଶୀଧର ପ୍ରଧାନ

ଅଧ୍ୟାପକ ଡ଼ଃ କୁଞ୍ଜବିହାରୀ ପ୍ରଧାନ

ଶ୍ରୀ ଗୋପାଳ ଚନ୍ଦ୍ର ଦାଶ

ଅଧ୍ୟାପିକା ଡ଼ଃ. ଇନ୍ଦିରା ଦାଶ

**ଉପଦେଷ୍ଟା :**

ଶ୍ରୀ ଗୋବିନ୍ଦ ରାଜଗୁରୁ

ଡ଼ଃ ବିପିନ ବିହାରୀ ସାହୁ

ଶ୍ରୀ ହାଡ଼ିବନ୍ଧୁ ମିଶ୍ର

**ସହଯୋଗୀ :**

ଶ୍ରୀ ଅନିଲ୍ କୁମାର ମିଶ୍ର

ଶ୍ରୀ ଅଜୟ୍ ଭାଇ

ଶ୍ରୀ ବିଭୂତି ଭୂଷଣ ବେହେରା

ପ୍ରକାଶକ : ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତି କମିଟି, ଅନୁଗୋଳ

ମୁଦ୍ରଣ : **ଓଁମା ପ୍ରିଣ୍ଟର୍ସ**

*ଶୀତଲ ପ୍ଲାଜା, ରୁମ୍ ନଂ-୧୦, ଅନୁଗୋଳ, ମୋ :୯୮୬୧୦୮୮୧୬୯*

# ସଂପାଦକୀୟ.............

ମହାରାଜା ସୋମନାଥ ସିଂହ ଜଗଦେବ ଥିଲେ ସ୍ୱାଭିମାନ ଓ ସ୍ୱାଧୀନ ଚେତନାର ପ୍ରତୀକ। ତାଙ୍କରି ଆଦର୍ଶରେ ଅନୁପ୍ରାଣୀତ କରି ସୁସ୍ଥ ସମାଜ ଗଢ଼ିଥିବା ଦିଗରେ ମହାରାଜା ସୋମନାଥସିଂହ ଜଗଦେବ ସ୍ମୃତି କମିଟି ବହୁ ଦିନରୁ କାର୍ଯ୍ୟକରି ଆସୁଅଛି ଓ କରି ଚାଲିବ। ଜନ ସହଯୋଗ ଆମର ଏକାନ୍ତ କାମ୍ୟ।

ସୋମନାଥ ସିଂହଙ୍କର ଶୌର୍ଯ୍ୟ , ବୀର୍ଯ୍ୟ, ଦୟା , ଦାକ୍ଷିଣ୍ୟ ସମ୍ବଳିତ ନାନା କୀର୍ତ୍ତି ଗାଥା ଅନୁଗୋଳରେ ସାଧାରଣ ପ୍ରଚଳିତ ଏବଂ ଆଜିସୁଦ୍ଧା ଅନୁଗୋଳ ବାସୀଙ୍କର ତାଙ୍କ ପ୍ରତି ଗଭୀର ସ୍ନେହ ତଥା ସହାନୁଭୂତି ପରିଲକ୍ଷିତ ହୁଏ।

ଆଜି ମହାରାଜାଙ୍କର **"୨୦୮ତମ ଜୟନ୍ତୀ ଉତ୍ସବ"** ରେ ଆସନ୍ତୁ ସମଗ୍ର ଅନୁଗୋଳ ବାସୀ ଏକ ମନ ପ୍ରାଣରେ ଅନୁଗୋଳର ସର୍ବାଙ୍ଗୀନ ଉନ୍ନତି କଳ୍ପେ କାର୍ଯ୍ୟ କରିବା ନିମିତ୍ତ ଶପଥ ନେବା।

ସ୍ମରଣିକା ନିମିତ୍ତ ବହୁ ଉପାଦେୟ ଲେଖା ଆମେ ପାଇଥିଲୁ। ମାତ୍ର ଅନିର୍ବାର୍ଯ୍ୟ କାରଣ ବଶତଃ ସମସ୍ତ ଲେଖା ପ୍ରକାଶ ହୋଇପାରିନାହିଁ। ସୁଧୀଲେଖକ ମାନଙ୍କ ନିକଟରେ ଆମର ବିନମ୍ର ପ୍ରାର୍ଥନା। ପରବର୍ତ୍ତୀ ସଂଖ୍ୟାରେ ଏଗୁଡ଼ିକୁ ପ୍ରକାଶ କରିବାର ଆଶା ଅଛି। ଆମର ସମସ୍ତ ପୃଷ୍ଠପୋଷକ, ଶୁଭେଚ୍ଛୁ, ସାହାଯ୍ୟକର୍ତ୍ତା ମାନଙ୍କ ନିକଟରେ ଆମେ ଗଭୀର କୃତଜ୍ଞତା ପ୍ରକାଶ କରୁଅଛୁ।

ସଂପାଦନା ମଣ୍ଡଳୀ

ରାଜା ଶ୍ରୀ ବୀରବର ରୁଦ୍ରନାରାୟଣ ମହୀନ୍ଦ୍ର ଜଗଦେବ

ମହୀନ୍ଦ୍ରଭବନ, ରାଜପ୍ରାସାଦ ଅନୁଗୋଳ, ବାଲୁଅକଟା

## ସଭାପତିଙ୍କ ଲେଖନୀରୁ......................

ପ୍ରତିବର୍ଷ ପରି ଏବର୍ଷ ମଧ୍ୟ ଅଗଷ୍ଟ ମାସର ୧୧ତାରିଖରେ ଅନୁଗୋଳର ଶେଷସ୍ୱାଧୀନ ରାଜା **'ସୋମନାଥ ସିଂହଙ୍କର ଜୟନ୍ତୀ ଉତ୍ସବ'** ଜନତାର ଆନନ୍ଦ ଉଲ୍ଲାସଭିତରେ ମହାସମାରୋହରେ ପାଳିତ ହେଉଛି । ଏହି ଅବସରରେ ସ୍ମୃତି କମିଟି ଆନୁକୂଲ୍ୟରେ ଏକ ଉଚ୍ଚମାନର ସ୍ମରଣିକା ପ୍ରକାଶନ ଏବଂ ଉନ୍ମୋଚନର ବ୍ୟବସ୍ଥା ହେଉଛି । ସ୍ମରଣିକାରେ ସାରା ଓଡ଼ିଶାର ବିଦ୍ୱାନ ମାନଙ୍କ ଗବେଷଣାଧର୍ମୀ ସନ୍ଦର୍ଭମାନ, ଶୁଭେଚ୍ଛୁମାନଙ୍କ ଶୁଭେଚ୍ଛା ବାର୍ତ୍ତାମାନ ଏବଂ ଚିନ୍ତାଶୀଳ ନାଗରିକମାନଙ୍କ ସୁଚିନ୍ତିତ ମତାମତମାନ ସ୍ଥାନିତ ହୋଇଛି । ଜିଲ୍ଲାର ଏବଂ ଜିଲ୍ଲା ବାହାରର ବରିଷ୍ଠ ଓ ବିଶିଷ୍ଟ ବୁଦ୍ଧିଜୀବୀଗଣ ପୂଣ୍ୟ ଶ୍ଳୋକ ସୋମନାଥଙ୍କ ସ୍ମୃତିଚାରଣ କରିଛନ୍ତି । ତାଙ୍କ ବହୁମୁଖୀ ପ୍ରତିଭାର ବିଭିନ୍ନ ଦିଗ ଉପରେ ଆଲୋକ ପାତ କରିଛନ୍ତି, ସେ କାଳର ଅନୁଗୋଳର ତଥା ଓଡ଼ିଶା ଓ ଭାରତର ସାମାଜିକ, ସାଂସ୍କୃତିକ ଅର୍ଥନୈତିକ ଓ ରାଜନୈତିକ ଇତିହାସର ଏକ ଝଲକ ଦେଇଛନ୍ତି । ମହାରାଜାଙ୍କ ବ୍ୟକ୍ତିତ୍ୱର ମୂଲ୍ୟାୟନ କରିଛନ୍ତି, ଆଦର୍ଶ ଓ ମୂଲ୍ୟବୋଧର ଆକଳନ କରିଛନ୍ତି । ସ୍ମରଣିକା ସର୍ବତୋଭାବେ ସାଫଲ୍ୟ ମଣ୍ଡିତ ହୋଇଛି ବୋଲି ମୋର ଦୃଢ଼ ବିଶ୍ୱାସ । ସ୍ମରଣିକାର ଅଭୁତପୂର୍ବ ସାଫଲ୍ୟ ପାଇଁ ସ୍ମୃତିକମିଟିର କର୍ମକର୍ତ୍ତା ଓ ସଭ୍ୟମାନଙ୍କୁ ସମ୍ପାଦକମାନଙ୍କୁ, ଲେଖକ ମାନଙ୍କୁ ଏବଂ ସର୍ବୋପରି ଅନୁଗୁଳର ପୂଜ୍ୟପୂଜା ବ୍ରତୀ ଜନତାକୁ ମୋର ଭକ୍ତି ପୂତ ଅଭିବାଦନ ଏବଂ ଶ୍ରଦ୍ଧାଯୁକ୍ତ ଅଭିନନ୍ଦନ ଜଣାଉଛି ।

ପ୍ରଥିତଯଶା ମହାରାଜା ସୋମନାଥ କେବଳ ମୋର ପରମାରାଧ୍ୟ ପୂର୍ବଜ ନୁହନ୍ତି, ସାରା ଅନୁଗୋଳ ଜିଲ୍ଲାର , ସାରା ଓଡ଼ିଶାର ତଥା ସାରା ଭାରତର ପରମାରାଧ୍ୟ ପୂର୍ବସୂରୀ । ସେହି ସ୍ୱାଧୀନ ଚେତା ଦେଶଭକ୍ତ ନିଜର ସୀମିତ ଶକ୍ତି ଏବଂ ଆହୁରି ସୀମିତ ସମ୍ବଳ ଭିତରେ ବ୍ରିଟିଶ ସାମ୍ରାଜ୍ୟବାଦ ଏବଂ ଉପନିବେଶବାଦ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିପାରିଥିଲେ । ପ୍ରତ୍ୟକ୍ଷ ଭାବରେ ହେଉ କି ପରୋକ୍ଷ ଭାବରେ ହେଉ ଦୀର୍ଘ କାଳ ଧରି ସାମ୍ରାଜ୍ୟବାଦ ବିରୁଦ୍ଧରେ ଅହିଂସ ସଂଗ୍ରାମ କରି ପାରିଥିଲେ । ଭାଗ୍ୟର ବିଡ଼ମ୍ବନା ଏବଂ ନିୟତିର କ୍ରୁର ତାଡ଼ନା ସତ୍ତ୍ୱେ ପଛଘୁଞ୍ଚା ଦେଇନଥିଲେ । ଦେଶ ପାଇଁ , ଜାତି ପାଇଁ, ମାନବ ଜାତିର ଜନ୍ମଗତ ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଶହୀଦ ହୋଇଗଲେ । ଘନ ଅରଣ୍ୟାନୀ ପୂର୍ଣ୍ଣ, ହିଂସ୍ରଜନ୍ତୁ ଅଧ୍ୟୁଷିତ ଏବଂ ଗୃହଯୁଦ୍ଧ ବିଧ୍ୱସ୍ତ ଏକ କ୍ଷୁଦ୍ରରାଜ୍ୟ ସମୃଦ୍ଧି ପାଇଁ କେତେ ଯୋଜନା କରିଥିଲେ, କେତେ ସ୍ୱପ୍ନ ଦେଖିଥିଲେ । ସେ ସ୍ୱପ୍ନ ସବୁ ସ୍ୱପ୍ନରେ ରହିଗଲା । ଆଜି ତାଙ୍କ ପବିତ୍ର ଜନ୍ମବାସବରେ ଆସନ୍ତୁ ଦିବଂଗତ ମହାରାଜାଙ୍କ ଆଦର୍ଶରେ ଅନୁପ୍ରାଣୀତ ହୋଇ ତାଙ୍କ ସ୍ୱପ୍ନକୁ ସାକାର କରିବା ପାଇଁ , ଅନୁଗୁଳର ଅର୍ଥନୈତିକ, ସାଂସ୍କୃତିକ ବିକାଶ କରିବାପାଇଁ ସଂକଳ୍ପ କରିବା । ତାହା ହିଁ ହେବ ତାଙ୍କ ସ୍ମୃତିରେ ଆମର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ।

**ସଭାପତି**

# ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତି କମିଟି, ଅନୁଗୋଳ

**Regd.No. ANL-2591/62 of 2007 - 08**

ପ୍ରତିଷ୍ଠାତା : ଶ୍ରୀ ଗୋବିନ୍ଦ ରାଜଗୁରୁ

***କମିଟିର ଉଦ୍ଦେଶ୍ୟ :***

କ ) ସ୍ୱାଭିମାନୀ, ସ୍ୱାଧୀନତା ସଂଗ୍ରାମୀ ମହାରାଜା ସୋମନାଥ ସିଂହ ଜଗଦେବଙ୍କ ଆଦର୍ଶରେ ଅନୁପ୍ରାଣୀତ କରି ସ୍ୱାଭିମାନ, ଦେଶପ୍ରେମ, ତ୍ୟାଗ, ମାନବ ସେବା ଆଦି ଦ୍ୱାରା ଉତ୍ତମ ନାଗରିକ ଓ ସୁସ୍ଥ ସମାଜ ଗଠନ ।

ଖ ) ମାତୃଭାଷା ଓ ମାତୃଭୂମିର ସେବା , ପ୍ରତିଭା ଅନ୍ୱେଷଣ ଓ ପ୍ରୋତ୍ସାହନ , ପୂଜ୍ୟପୂଜା, ଶିକ୍ଷା ସଂସ୍କୃତି, ସାହିତ୍ୟର ସୁରକ୍ଷା ଓ ପ୍ରସାର , ବରିଷ୍ଠ ନାଗରିକ ମାନଙ୍କର ସେବା ଓ ସମ୍ମାନ ।

ଗ ) ସଦସ୍ୟ ମାନଙ୍କ ମନରେ ବ୍ୟକ୍ତି ତଥା ସମାଜ ପ୍ରତି ସକାରାତ୍ମକ ଭାବ ସୃଷ୍ଟି କରିବା ।

ଘ ) ଯୁବ ସମାଜକୁ ଉଦ୍‌ବୁଦ୍ଧ କରି ଦେଶ ଗଠନର ମାନସିକତା ସୃଷ୍ଟି କରିବା ।

ଙ ) ସମାଜ ମଙ୍ଗଳ କାମରେ ସରକାରଙ୍କୁ ସହଯୋଗ କରିବା

ଚ ) ଏହାକୁ ଏକ ସମାଜସେବୀ ସାଂସ୍କୃତିକ ଅନୁଷ୍ଠାନ ଭାବେ ଗଢ଼ିବା ।

***ପରିଚାଳନା କମିଟି :***

| | | |
|---|---|---|
| ୧- | **ସ୍ଥାୟୀ ସଭାପତି** | ବୀରବର ରୁଦ୍ରନାରାୟଣ ମହୀନ୍ଦ୍ର ଜଗଦେବ |
| ୨- | **ଉପ ସଭାପତି** | ଅଧ୍ୟାପକ ବଂଶୀଧର ପ୍ରଧାନ |
| ୩- | **ସଂପାଦକ** | ଅଧ୍ୟାପକ ଡ଼ଃ ଜୟାନନ୍ଦ ନାୟକ |
| ୪- | **କୋଷାଧ୍ୟକ୍ଷ** | ଶ୍ରୀ ଦେବଦତ୍ତ ମିଶ୍ର (ଟାକୁଲା) |
| ୫- | **ସଦସ୍ୟା** | ଶ୍ରୀମତୀ ସୁକାନ୍ତି ଦାସ |
| ୬- | **ସଦସ୍ୟା** | ଆଡ଼ଭୋକେଟ୍ ଶ୍ରୀମତୀ ଶୈଳବାଳା ମହାପାତ୍ର |
| ୮- | **ସଦସ୍ୟ** | ଡ଼ଃ. ବିପିନ ବିହାରୀ ସାହୁ |



# ବାର୍ତ୍ତା

**ଶ୍ରୀ ମହେଶ ସାହୁ**
ବିଧାୟକ , ତାଳଚେର

ତା. ୧୧.୦୮.୧୮୦୦ ରିଖ ଅନୁଗୋଳ ଭୂଖଣ୍ଡର ଇତିହାସରେ ଏକ ସ୍ମରଣୀୟ ଦିବସ । ଏହି ପୂଣ୍ୟତିଥିରେ ଅନୁଗୋଳର ଶେଷ ସ୍ୱାଧୀନ ରାଜା ତଥା ବ୍ରିଟିଶ ସାମ୍ରାଜ୍ୟବାଦ ବିରୋଧୀ ଆନ୍ଦୋଳନର ମହାନ ନେତା ବୀର ଶ୍ରୀ ସୋମନାଥ୍ ଜଗଦେବ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତା ଗୋପୀନାଥ ସିଂହ ଜଗଦେବ, ମାତା ନିମାପଡ଼ାର ରାଜକନ୍ୟା ସୁଲୋଚନା ଦେବୀ । ସୋମନାଥଙ୍କ ପିଉସୀ ତିଳୋତ୍ତମା ଦେବୀ ତାଳଚେର ରାଜ୍ୟର ସ୍ୱନାମଧନ୍ୟ ମହାରାଜା ଭାଗିରଥୀ ହରିଚନ୍ଦନଙ୍କ ସହଧର୍ମିଣୀ ଥିଲେ । ସୋମନାଥ ସିଂହଙ୍କର ୧୯ବର୍ଷ ବୟସରେ ତାଳଚେର ରାଜଦମ୍ପତ୍ତିଙ୍କର ଅଲିଅଳୀ କନ୍ୟା କେମାଦେଇଙ୍କ ପାଣି ଗ୍ରହଣ କରିଥିଲେ ।

ନବଗୁଞ୍ଜର ରାଜା  ସୋମନାଥଙ୍କ ରାଣୀହଂସ ପୁରେ ନବଜଣ ରାଣୀଥିଲେ ମଧ୍ୟ ମହାରାଜା କେମାଦେଇଙ୍କ ସର୍ବାପେକ୍ଷା  ବେଶୀ ଭଲ ପାଉଥିଲେ ।  କେମାଦେଇ ବିଦୂଷୀ ଥିଲେ । ମହାରାଜାଙ୍କୁ ରାଜଗାଦୀରେ ସାହାଯ୍ୟ କରୁଥିଲେ । ଅନୁଗୋଳର ବିବେକ ରକ୍ଷୟିତ୍ରୀ ଥିଲେ ବୋଲି କହିଲେ ମଧ୍ୟ ଅତ୍ୟୁକ୍ତି ହେବନାହିଁ । ଏହା ଲେଖିବାର ତାତ୍ପର୍ଯ୍ୟ ଏହି ଯେ ମହାରାଜ ସୋମନାଥଙ୍କ ଅଭ୍ୟୁଦୟ କାଳରେ ଏବଂ ତାର ବହୁକାଳ ପୂର୍ବରୁ ତାଳଚେର ଅନୁଗୋଳର ସମ୍ପର୍କ ନିବିଡ଼ ଥିଲା । ପ୍ରଜାମାନଙ୍କର ଭାଷା , ସଂସ୍କୃତି, ଚାଲିଚଳନ  , ଜୀବନଚର୍ଯ୍ୟା ଏକ ଭଳି ଥିଲା । ଭୌଗଳିକ ସୀମା ମିଶି ଯାଇଥିଲା । ଭାବଗତ ସଂପର୍କ ଦୃଢ଼ୀଭୂତ ହୋଇଥିଲା । ଅନୁଗୋଳ ତାଳଚେର ପରସ୍ପର ପରିପୂରକ ଥିଲେ । କବି ନୃସିଂହ ରାୟଗୁରୁ ଉଭୟ ରାଜ୍ୟର ରାଜଗୁରୁ ହେବାପରେ ସେହି ସଂପର୍କ ନିବିଡ଼ତର ହୋଇଗଲା । ପ୍ରଜାମଣ୍ଡଳ ଆନ୍ଦୋଳନ ସମୟରେ ଅନୁଗୋଳରେ ତାଳଚେରର ବିସ୍ଥାପିତ ଜନତା ପାଇଁ ଶହ ଶହ ଶରଣାର୍ଥୀ ଶିବିର ଗଢ଼ିଉଠିଥିଲା । ଅନୁଗୋଳର ସଂଗ୍ରାମୀ ଜନତା ତାଳଚେରର ବାସଚ୍ୟୁତ ଜନତାର ପରମ ବନ୍ଧୁ ରୂପେ ପରିଗଣିତ ହୋଇଗଲେ । ବିଦ୍ରୋହର ବହ୍ନି ପ୍ରଶମିତ ହେବାପରେ ତାଳଚେରର ବହୁ ଅଧିବାସୀ ଅନୁଗୋଳକୁ ନିଜର ବାସଭୂମି ରୂପେ ଶ୍ରଦ୍ଧାର ସହିତ ଆଦରି ନେଲେ । ୧୯୯୩ ଖ୍ରୀଷ୍ଟାବ୍ଦରେ ଅନୁଗୋଳ ଏକ ସ୍ୱତନ୍ତ୍ର ଜିଲ୍ଲାର ମାନ୍ୟତା ଏବଂ ମର୍ଯ୍ୟାଦାଭୁକ୍ତ ହେଲା । ତାଳଚେର ଅନୁଗୋଳର  ଏକ ଅବିଚ୍ଛେଦ୍ୟ ଅଂଗ ରୂପେ ଚିରଦିନ ପାଇଁ ଅନୁଗୋଳ ସହିତ ଏକାକାର ହୋଇଗଲା ।

ମହାରାଜ ସୋମନାଥ ସିଂହ କେବଳ ଅନୁଗୋଳ ଭୂଖଣ୍ଡରେ ନୁହେଁ ସମଗ୍ର ଦେଶର ଗର୍ବ ଓ ଗୌରବ । ମାତ୍ର ଆମେ ଏପର୍ଯ୍ୟନ୍ତ ତାଙ୍କୁ ତାଙ୍କର ନ୍ୟାର୍ଯ୍ୟ ସମ୍ମାନ ଦେଇପାରିନାହୁଁ । ଏହା କମ୍ ପରିତାପର ବିଷୟ ନୁହେଁ । ମୁଁ ଓଡ଼ିଶା ବିଧାନ ସଭାରେ ବାରମ୍ବାର ଏ ପ୍ରଶ୍ନ ଉତ୍ଥାପନ କରିଛି । ଅନ୍ୟ ବିଧାୟକ ମାନେ ମଧ୍ୟ ମୋତେ ସମର୍ଥନ କରିଛନ୍ତି । ମାତ୍ର ସରକାର ଏପର୍ଯ୍ୟନ୍ତ ନୀରବ ଓ ନିଷ୍କ୍ରିୟ ରହିଛନ୍ତି । ସେ ବକ୍ସି ଜଗବନ୍ଧୁ ଓ ବୀର ସୁରେନ୍ଦ୍ର ସାଏଙ୍କ ପରି ଜଣେ ମହାନ ସ୍ୱାଧୀନତା ସଂଗ୍ରାମୀ ।ଭାରତ ସରକାର ତାଙ୍କୁ ନାନା ସାହେବ ଓ ଲକ୍ଷ୍ମୀବାଇଙ୍କ ପରି ସ୍ୱାଧୀନତା ସଂଗ୍ରାମୀ ଭାବେ ସମ୍ମାନ ଦେବେ ବୋଲି ଆଶା ।



TELEPHONE NUMBERS

E-mail : dmangul@ori.nic.in
damangul@sancharnet.in

*Shri Girish S.N.* , I.A.S
District Magistrate & Collector, Angul

No. 593
Dt. 6.8.2008

## MESSAGE

I am delighted to know that The Maharaja Somanath Singh Jagdev Smruti Committee of Angul is going to celebrate the "208th Birth day of Maharaj Somnath Jagdev" on 11th August, 2008 at Angul. A **'Souvenir'** is being published to mark the occasion.

We are proud of being the inheritors of the legacy of Maharaja Somanath Singh Jagdev, whose act of gallantry against the British has inspired us to keep out head high always. The Maharaja who is now a part of history will remain adorable for all, especially for the Angul people.

I take this opportunity to convey my heartfelt homage to the great soul and applaud all the members of the committe for their noble edeavor.

**(GIRISH S.N.)**





**Sri Dharanidhar Nath, OAS(S)**
Joint Secretary to Government
Water Resources Department

*Bhubaneswar*
*Date : June 2008*

# MESSAGE

*I am delighted to know that Maharaj Somanath Singh Jagadev Smruti Committee, Angul is going to celebrate 208th Birth Anniversary of the last independent King of India Shri Somanatha singh Jagadev on 11.08.2008 and a Souvenir is being brought out in commemoration. Angul Occupies a prominent place in the history of Orissa. Somanatha Singh Jagadev was crowned as the king of Angul on 03.10.1814. He had a council of wise and learned ministers and courtiers. He was a great lyrical poet and ocntributed immensely for the growth of Oriya Literature. He kept the indentity of Angul through out his rule. His relentless fight against the British rule had made Angul invincible till 1848. His valour, courage and sacrifice are source of inspiration for us.*

*I wish all success for the celebration and publication of the "Souvenir".*

**(D.NATH)**

***Shri Bandhu Bilhor,*** I.A.S
Addl. District Magistrate , Angul

## MESSAGE

I am very much glad to know that the MAHARAJA SOMANATHA SINGH JAGDEV SMRUTI COMMITTEE, Angul is going to celebrate its **"208th Birth Anniversary of Maharaj Somanath Singh Jagdev"** on 11. 08. 08 and a **"Souvenir"** is also going to be published to commemorate the occasion.

I wish all success of the occasion.

**(BANDHU BILHOR)**

# ବାର୍ତ୍ତା

**ସୁଦର୍ଶନ ପରିଡ଼ା,**
ଉପଜିଲ୍ଲାପାଳ, ଅନୁଗୋଳ

ଉପଜିଲ୍ଲାପାଳଙ୍କ କାର୍ଯ୍ୟାଳୟ, ଅନୁଗୋଳ
ପତ୍ର ସଂଖ୍ୟା : ୩୨୭୩, ତା. ୦୬.୦୮.୦୮

ମାନନୀୟ,

ଶ୍ରୀଯୁକ୍ତ ସଂପାଦକ ମହାରାଜ ସୋମନାଥ ସିଂହ ଜଗଦେବ ସ୍ମୃତି କମିଟି, ଅନୁଗୋଳ

ମହାଶୟ,

ଆସନ୍ତା ତା.୧୧.୦୮.୦୮ରିଖ ଦିନ ମହାରାଜ **ସୋମନାଥ ସିଂହ ଜଗଦେବଙ୍କର ୨୦୮ତମ ଜୟନ୍ତୀ** ପାଳନ କରାଯାଉଥିବାରୁ ମୁଁ ଅନୁଷ୍ଠାନକୁ ଅଭିନନ୍ଦନ ଜଣାଉଅଛି।

*(ଉପଜିଲ୍ଲାପାଳ)*
*ଅନୁଗୋଳ*

# ଶୁଭେଚ୍ଛା ବାର୍ତ୍ତା

**ରାଜାଶ୍ରୀ ଶରତଚନ୍ଦ୍ର ସିଂହଦେଓ ରାୟଟସିଂହ**

ତା.୧୧.୦୮.୨୦୦୮ ରିଖରେ ଅନୁଗୋଳର ଶେଷ ସ୍ୱାଧୀନ ରାଜା ବୀର ସୋମନାଥ ସିଂହ ଜଗଦେବଙ୍କ ପବିତ୍ର ଜନ୍ମତିଥିରେ ଏକ **ସ୍ମରଣିକା** ପ୍ରକାଶ ପାଉଥିବା ଜାଣି ମୁଁ ଆନନ୍ଦିତ।

ନିମାପଡ଼ା ମୋର ପ୍ରିୟ ଜନ୍ମଭୂମି। ମହାନ୍ ତାହାର ପରମ୍ପରା, ଗୌରବମୟ ତାହାର ଐତିହ୍ୟ। ଏହା ବୀର ସୋମନାଥ ସିଂହ ଙ୍କର ମାତୁଳାଳୟ। ସୋମନାଥଙ୍କୁ ଜନ୍ମଦେଇ ବୀରଭୂମି ଅନୁଗୁଳ ଯେତିକି ଗର୍ବ କରେ, ସେହି ବୀର ମୁକ୍ତି ସଂଗ୍ରାମୀଙ୍କୁ ଶୈଶବ, କୈଶୋରରେ କୋଳରେ ଧରି, ଲାଳନ ପାଳନ କରି ସେତିକି ଗର୍ବକରେ ମାତୁଳାଳୟ ନିମାପଡ଼ା। ମୋର ପାଞ୍ଚପିଢ଼ୀର ଯଶସ୍ୱିନୀ ପିଉସୀ ସୁଲୋଚନା ଦେବୀଙ୍କ ଗର୍ଭରୁ ଜାତ ହୋଇଥିଲେ ଅଭିମନ୍ୟୁ ରୂପୀ ସୋମନାଥ। ଲୋକମୁଖରୁ, ଜନଶ୍ରୁତିରୁ, କିମ୍ବଦନ୍ତୀରୁ ବୀର ସୋମନାଥଙ୍କ ଶୈଶବ ଓ କୈଶୋରର ବହୁ ଅଭୁଲା କାହାଣୀ ଶୁଣିଛି। ଆଦ୍ୟ ଯୌବନରେ ଭଣଜା ସୋମନାଥଙ୍କ ଲେଖନୀ ନିସୃତ ବହୁ ଗୀତି - କବିତା ପଢ଼ିଛି। କେତେ ବଡ଼ ପ୍ରତିଭାର ଅଧିକାରୀ ଥିଲେ ସୋମନାଥ। ମୋ ବଂଶର ଭଣଜା। ଗର୍ବରେ ମୋର ଛାତି ଫୁଲି ଉଠୁଛି। ଆନନ୍ଦରେ ପ୍ରାଣ ବିଭୋର ହେଉଛି।

ପିଉସା ଗୋପୀନାଥ ସିଂହ ଜଣେ ଶାନ୍ତ, ଶିଷ୍ଟ, ଧୈର୍ଯ୍ୟବାନ ଏବଂ ସହନଶୀଳ ଯୁବକ ଥିଲେ। ଆତତାୟୀ ଦ୍ୱାରା ନିହତ ହେଲେ। ପିଉସୀ ସୁଲୋଚନା ଦେବୀ ନିଜର ପ୍ରାଣ ପ୍ରତିମ ଶିଶୁପୁତ୍ରକୁ ସଂଗରେ ନେଇ ପିତ୍ରାଳୟକୁ ଚାଲି ଆସିଲେ। ପିତାମହ ନିଜର ସ୍ନେହର ପୌତ୍ର ସୋମନାଥଙ୍କ ବାଲ୍ୟଶିକ୍ଷାର ବ୍ୟବସ୍ଥା କରିଦେଲେ। ଶିଶୁର ସାହିତ୍ୟ, ସଂଗୀତ ପ୍ରତି ସହଜାତ ସ୍ପୃହା ଦେଖି ପିତାମହ ତାଙ୍କୁ ସାହିତ୍ୟ, ବ୍ୟାକରଣ ସହିତ ସଂଗୀତ ଶିକ୍ଷା ଦେବାପାଇଁ ବ୍ୟବସ୍ଥା କଲେ। ଅବଧାନଙ୍କ ସୁପାରିଶ କ୍ରମେ ମାମୁଁ ତାଙ୍କୁ ପୁରୀକୁ ନେଇ ଜଣେ ସଂସ୍କୃତ ପଣ୍ଡିତଙ୍କ ତତ୍ତ୍ୱାବଧାନରେ ସଂସ୍କୃତ ସାହିତ୍ୟ ଓ ବ୍ୟାକରଣ ସହିତ ପ୍ରାଚୀନ ଓଡ଼ିଆ ସାହିତ୍ୟ ଅଧ୍ୟୟନର ବ୍ୟବସ୍ଥା କରିଦେଲେ। ସୋମନାଥଙ୍କ ପୁରୀ ଅବସ୍ଥାନ କାଳରେ କବି ପ୍ରତିଭାର ସ୍ଫୁରଣ ହୋଇଥିଲା। କିଶୋର କବିଙ୍କ ସୃଜନଶୀଳ ଲେଖନୀରୁ ଏକ ପରେ ଏକ ଗୀତି କବିତା ଝରିଯାଇଥିଲା। ଏକ ଶତାବ୍ଦୀ ପରେ ପ୍ରଫେସର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ସେ ସବୁ କବିତା ସଂଗ୍ରହ କରି ସୋମନାଥ ଗୀତାବଳୀ ସଂକଳନରେ ପ୍ରକାଶିତ କରିଛନ୍ତି। ମାତ୍ର ଆହୁରି ବହୁ କବିତା ଲୋକ ଲୋଚନର ଅଗୋଚରରେ ରହି ଯାଇଛି।

୧୮୧୪ ସାଲରେ ଯୁବରାଜ ସୋମନାଥସିଂହ ମାତାମହଙ୍କ ପ୍ରଚେଷ୍ଟାରେ ଅନୁଗୋଳ ରାଜସିଂହାସନ ଆରୋହଣ କଲେ। ଏ ସମ୍ବାଦ ପାଇ ଜାମାତ୍ରା ନିମାପଡ଼ା ଜନତାର ଆନନ୍ଦର ସୀମା ରହିଲା ନାହିଁ। ସେହି ଦିନଠାରୁ ଅନୁଗୋଳ ସହିତ ନିମାପଡ଼ା ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇ ରହିଛି। ଦୁଇଶହ ବର୍ଷ ବିତି ଯାଇଛି। ନିମାପଡ଼ା ଏବେ ବି ଅନୁଗୋଳର ମାମୁଁଘର। ଆଜିର ଦିନରେ ମହାରାଜା ସୋମନାଥଙ୍କ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି।

**ନିମାପଡ଼ା ରାଜପ୍ରାସାଦ, ଜିଲ୍ଲା -ପୁରୀ**



# ବାର୍ତ୍ତା

**Brig. K.P. Singh Deo**
AVSM. ADC
MEMBER OF PARLIAMENT
13(LOK SABHA) Retd.

186, South Avenue
New Delhi - 110011
Dt. 04. Aug.2008

ମହାରାଜା ସୋମନାଥ ସିଂହ ଜଗଧେବ ସ୍ମୃତି କମିଟି ପକ୍ଷରୁ ଅନୁଗୁଳର ଶେଷ ସ୍ୱାଧୀନ ରାଜା ସୋମନାଥ ସିଂହ ଜଗଧେବଙ୍କର ୨୦୮ତମ ଜୟନ୍ତୀ ପାଳନ ଆଗାମୀ ୧୧ ତାରିଖରେ ହେବା ଜାଣି ଅତ୍ୟନ୍ତ ଆନନ୍ଦିତ ହେଲି।

ମହାରାଜା ସୋମନାଥ ସିଂହ ଜଗଧେବ ଭଳି ଜଣେ ସ୍ୱାଧୀନ ଚେତା, ବିଚକ୍ଷଣ , ବୁଦ୍ଧିମାନ, ସାହସୀ, ସଂଗ୍ରାମୀ ତଥା ସ୍ୱାଭିମାନୀ ରାଜା ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ବିଦେଶୀମାନଙ୍କ ବିରୁଦ୍ଧରେ ନିଜର ସଂଗ୍ରାମ ଜାରି ରଖିଥିଲେ। ସେ ଭାରତ ମୁକ୍ତି ସଂଗ୍ରାମର ମହାନ ଯୋଦ୍ଧା ଏବଂ ଆଜିର ପୀଢ଼ି ପାଇଁ ଏକ ଗୌରବମୟ ଇତିହାସ ସୃଷ୍ଟି କରିଯାଇଛନ୍ତି। ଇଂରେଜମାନଙ୍କ ବିରୁଦ୍ଧରେ ସେ ଯୁଦ୍ଧଘୋଷଣା କରି ଇଂରେଜ ମାନଙ୍କ ଦ୍ୱାରା ବନ୍ଦୀହୋଇ ହଜାରିବାଗ ଜେଲରେ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ କରିଥିଲେ। ଏହା ବର୍ତ୍ତମାନର ଯୁବପୀଢ଼ି ପାଇଁ ଏକ ପ୍ରେରଣଶର ଉତ୍ସ। ଅନୁଗୁଳ ନିକଟସ୍ଥ କୃଷ୍ଣଚକ୍ରଗଡ଼ ଓ ପୁରୁଣାଗଡ଼ ରାଜପ୍ରାସାଦର ଭଗ୍ନାବଶେଷ ଆଜି ତାଙ୍କ ସ୍ମୃତିର ମୂକସାକ୍ଷୀ ହୋଇରହିଛି।ତାଙ୍କର ତ୍ୟାଗ ଏବଂ ଦେଶାତ୍ମବୋଧ ନିଶ୍ଚିତ ଭାବରେ ଆମ୍ଭମାନଙ୍କ ପାଇଁ ଏକ ନୂତନ ଦିଗ୍‌ଦର୍ଶନ ଦେଖାଇବାରେ ସହାୟ ହେବ।

ସେହି ମହାନ ଯୋଦ୍ଧା, ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ତଥା ଅନୁଗୁଳର ସ୍ୱାଭିମାନର ପ୍ରତୀକ ମହାରାଜା ସୋମନାଥ ସିଂହ ଜଗଧେବଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ସ୍ମୃତିକମିଟି ପକ୍ଷରୁ ଏକ ସ୍ମରଣିକା ପ୍ରକାଶନ ନିଶ୍ଚିତ ଭାବରେ ଏକ ସ୍ୱାଗତ ଯୋଗ୍ୟ ପଦକ୍ଷେପ। ଏହି ଉଦ୍ୟମକୁ ମୁଁ ଭୂୟସୀ ପ୍ରଶଂସା କରିବା ସହିତ ସେହି ମହାନ୍ ଯୋଦ୍ଧା, ସ୍ୱାଧୀନଚେତା, ସ୍ୱାଧୀନତା ସଂଗ୍ରାମୀ ଏବଂ ସ୍ୱାଭିମାନର ପ୍ରତୀକ ଶ୍ରୀ ସୋମନାଥ ସିଂହ ଜଗଧେବଙ୍କ ପ୍ରତି ମୋର ଭକ୍ତିପୂର୍ଣ୍ଣ ସମ୍ମାନ ପ୍ରଦର୍ଶନ କରୁଅଛି।

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"।

*କାମାକ୍ଷା ପ୍ରସାଦ ସିଂହଦେଓ*

*ତା.୦୪.୦୮.୨୦୦୮*



# ବାର୍ତ୍ତା

ରାଜା ଶ୍ରୀ ରାଜେନ୍ଦ୍ର ଚନ୍ଦ୍ର ବୀରବର ହରିଚନ୍ଦନ ମହୀନ୍ଦ୍ର ବାହାଦୁର

"ମହାରାଜା ସୋମନାଥ ସିଂହ ଜଗଦେବଙ୍କ ଜୟନ୍ତୀ" ବାସରରେ ସ୍ମୃତି କମିଟି ଆନୁକୂଲ୍ୟରେ ଏକ ମନୋଜ୍ଞ ସ୍ମରଣିକା ପ୍ରକାଶିତ ହେଉଥିବା ସମ୍ବାଦ ପାଇ ଅତ୍ୟନ୍ତ ପ୍ରୀତ ହେଲି । ଗତବର୍ଷର ସ୍ମରଣିକା ପାଠ କରି ଆନନ୍ଦ ବିଭୋର ହୋଇଗଲି । ଏ ବର୍ଷର ସ୍ମରଣିକା ପାଇଁ ଶୁଭେଚ୍ଛା ବାର୍ତ୍ତାଟିଏ ପଠାଇବାପାଇଁ ଅନୁରୋଧ କରିଛନ୍ତି । ମୁଁ କବି ନୁହେଁ, ଲେଖକ ବି ନୁହେଁ । ତଥାପି ଆପଣଙ୍କ ଅନୁରୋଧ ଏଡ଼ି ନପାରି ଶୁଭେଚ୍ଛା ବାର୍ତ୍ତାଟିଏ ପଠାଉଛି । ଗତବର୍ଷ ପରି ଏ ବର୍ଷ ମଧ୍ୟ ଓଡ଼ିଶାର ସ୍ୱନାମଧନ୍ୟ ରାଜା ତଥା ଭାରତର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ମହାରାଜା ସୋମନାଥଙ୍କ ପବିତ୍ର ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପାଇଁ ମୋ ପରି ଅକିଞ୍ଚନକୁ ସୁଯୋଗ ଦେଇଥିବାରୁ ସ୍ମୃତି କମିଟିର ଉପଦେଷ୍ଟା ମଣ୍ଡଳୀ, ସଭାପତି , ଉପସଭାପତି, ସମ୍ପାଦକ ମଣ୍ଡଳୀ ଏବଂ ସଭ୍ୟମାନଙ୍କୁ ପ୍ରଥମେ କୃତଜ୍ଞତା ଜଣାଉଛି । ତା ସଂଗେ ସଂଗେ ପୂଣ୍ୟଶ୍ଳୋକ ମହାରାଜା ସୋମନାଥଙ୍କ ପବିତ୍ର ସ୍ମୃତିରେ ଶ୍ରଦ୍ଧା ଓ ଭକ୍ତିର ଅଞ୍ଜଳିଭରା ସୁମନ ଅର୍ପଣ କରୁଛି ।

ମହାରାଜା ସୋମନାଥଙ୍କ ଆବିର୍ଭାବ ପୂର୍ବରୁ ମଧ୍ୟ ଅନୁଗୋଳ -ତାଳଚେରର ସମ୍ପର୍କ ଅତି ନିବିଡ଼ ଥିଲା । ତାଳଚେରର ମହାରାଜା ଭାଗିରଥୀ ହରିଚନ୍ଦନ ଅନୁଗୋଳର ସୁନ୍ଦରୀ- ବିଦୁଷୀ ରାଜକନ୍ୟା ତିଳୋତ୍ତମା ଦେବୀଙ୍କ ବିବାହ କରିଥିଲେ। ଦୁଇ ପଡ଼ୋଶୀ ରାଜ୍ୟ ଭିତରେ ସାଧାରଣ ଜନତାର ସାମାଜିକ ସମ୍ପର୍କ ଗଢ଼ିଉଠିଥିଲା । ଭାଷା , ସାହିତ୍ୟ, କଳା ଓ ସଂସ୍କୃତିର ସାମ୍ୟ ଯୋଗୁଁ ଦୁଇ ରାଜ୍ୟର ପ୍ରଜାମାନଙ୍କ ଭିତରେ ପାରସ୍ପରିକ ଶ୍ରଦ୍ଧା ଭକ୍ତିର ଏକ ନିବିଡ଼ ଏବଂ ଅନ୍ତରଙ୍ଗ ସମ୍ପର୍କ ଗଢ଼ି ଉଠିଥିଲା । ତାଳଚେରର ରାଜଗୁରୁ ଅନୁଗୋଳର ରାଜଗୁରୁ ଦାୟିତ୍ୱ ବହନ କରିବାରୁ ସେହି ସମ୍ପର୍କ ନିବିଡ଼ତର ହୋଇଥିଲା । ତାଳଚେରର ଲାବଣ୍ୟବତୀ ରାଜକନ୍ୟା କେମାଦେଇ ଯୁବରାଜ ସୋମନାଥଙ୍କୁ ପତି ରୂପରେ ବରଣ କରିବାରୁ ଦୁଇ ରାଜ୍ୟର ସମ୍ପର୍କ ନିବିଡ଼ତମ ହୋଇଗଲା । ତାଳଚେର ରାଜା ଅନୁଗୋଳର ମହାନ ପୃଷ୍ଠପୋଷକ ରୂପେ ଦଣ୍ଡାୟମାନ ହୋଇଥିଲେ । ମହାରାଜା ସୋମାନାଥ ସର୍ବଭାରତୀୟ ସ୍ତରରେ ଜଣେ ମହାନ ସ୍ୱାଧୀନ ଚେତା ରାଜା ରୂପେ ପ୍ରତିଷ୍ଠିତ ହୋଇଗଲେ । ଉଭୟ ତାଳଚେର ଓ ଅନୁଗୋଳର ଜନତାର ଶ୍ରଦ୍ଧାଭାଜନ ହୋଇଥିଲେ । ଆଜି ମଧ୍ୟ ଆମେ ତାଳଚେରବାସୀ ଜନତା ମହାରାଜା ସୋମନାଥଙ୍କ ପାଇଁ ଗର୍ବ ଅନୁଭବ କରୁଛୁ ।

ମୁଁ ତାଳଚେରବାସୀ ଜନତା ତରଫରୁ ଜୟନ୍ତୀ ଉତ୍ସବରେ ଅଭୁତପୂର୍ବ ସାଫଲ୍ୟ କାମନା କରୁଛି । ତା ସଂଗେ ସଂଗେ ଅନୁଗୁଳ ଜିଲ୍ଲାର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

ସମ୍ରାଟ ସଦନ

ରାଜପ୍ରାସାଦ ତାଳଚେର ଦୁର୍ଗ



नालको NALCO

General Manager (HRD & ADMN),
Nalco, S & P Complex, Angul

Dt. : 1st August, 2008

## Message

*I am extremely happy to learn that the "208th Birth Centenary of Maharaj Somnath Singh Jagdeb" the last Independent Raja of Angul and great Freedom Fighter is being celebrated at Angul on 11/08/2008.*

*I express my good wishes and gratitude to the Smruti Committee and the people of Angul on this great and memorable occasion.*

*(S.S. Patnaik)*



ଶ୍ରୀ ଶକ୍ତି ପ୍ରସାଦ ପଟ୍ଟନାୟକ

# ବାର୍ତ୍ତା

ମହାରାଜା ସୋମ୍‌ନାଥ ସିଂହ ଜଗଦେବ କେବଳ ଅନୁଗୁଳର ଶେଷ ସ୍ୱାଧୀନ ରାଜା ନୁହନ୍ତି, ସେ ଥିଲେ ଭାରତର ଅନ୍ତିମ ସ୍ୱାଧୀନ ନରପତି । ମାତୃଭୂମିର ସ୍ୱାଭିମାନ ଓ ସ୍ୱାଧନୀତା ରକ୍ଷା ନିମିତ୍ତ ସେ ସିପାହୀ ବିଦ୍ରୋହର ବହୁ ପୂର୍ବରୁ ଇଂରେଜ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ । ତାଙ୍କ ଆଦର୍ଶକୁ ଉଦ୍ ଜୀବିତ କରିରଖିବା ନିମିତ୍ତ ଆମେ ଅନୁଗୁଳ ନଗରପାଳ ଥିବାବେଳେ ନଗରପାଳିକା ତାଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରିଥିଲେ । ଏହି ପ୍ରତିମୂର୍ତ୍ତିକୁ ଉନ୍ମୋଚନ କରି ଓଡ଼ିଶାର ବରପୁତ୍ର ତଥା ମୁଖ୍ୟମନ୍ତ୍ରୀ ବିଜୁପଟ୍ଟନାୟକ ସୋମନାଥ ସିଂହଙ୍କୁ ଓଡ଼ିଶାର ଦ୍ୱିତୀୟ ଖାରବେଳ ଭାବେ ନାମିତ କରିଥିଲେ । ନିକଟରେ ଟାମଡ଼ା ସୋମନାଥ ମାର୍ଗ ଉନ୍ମୋଚନ କରିଛନ୍ତି ।

ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତିକମିଟି ସୋମନାଥ ସିଂହଙ୍କର ଜୟନ୍ତୀ ପାଳନ ସହ ଏକ ସ୍ମରଣିକା ପ୍ରକାଶ କରୁଥିବା ଜାଣି ଆମେ ଅତ୍ୟନ୍ତ ଆନନ୍ଦିତ ।

ଏ ଉତ୍ସବରେ ଶୁଭ କାମନା କରୁ ।

ଶ୍ରୀ ଶକ୍ତି ପ୍ରସାଦ ପଟ୍ଟନାୟକ
ଅଧ୍ୟକ୍ଷ , ଟାମଡ଼ା , ଅନୁଗୋଳ



ଯୋଗୀନାଥ ସାହୁ (ଅଧ୍ୟକ୍ଷ)

# ବାର୍ତ୍ତା

ଅନୁଗୋଳର ଶେଷ ସ୍ୱାଧୀନ ରାଜା ସୋମନାଥ ସିଂହ ଜଗଦେବଙ୍କ ଜୟନ୍ତୀ ଅବସରରେ ଏକ ସ୍ମରଣିକା ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ। ଓଡ଼ିଶା ଇତିହାସରେ ଅନୁଗୋଳର ଏକ ସ୍ୱତନ୍ତ୍ର ସ୍ଥାନ ଅଛି। ଜିଲ୍ଲାର ଲୋକଙ୍କ ଜୀବନ ଜୀବିକା , ଶିଳ୍ପ , ବାଣିଜ୍ୟ, କୃଷି, କଳା, ସାହିତ୍ୟ ସଂସ୍କୃତି ଆଦିକୁ ଲୋକଲୋଚନକୁ ଆଣିବା ଅତ୍ୟନ୍ତ ପ୍ରଶଂସନୀୟ। ଏଥିପାଇଁ ଛେଣ୍ଡିପଦା ପଞ୍ଚାୟତ ସମିତି ତରଫରୁ ସ୍ମରଣିକାର ସକଳ ସଫଳତା କାମନା କରୁଅଛି।

ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତି କମିଟିର ଏହା ଏକ ସାଧୁ ଉଦ୍ୟମ।

*ଯୋଗୀନାଥ ସାହୁ (ଅଧ୍ୟକ୍ଷ)*
*ଛେଣ୍ଡିପଦା ପଞ୍ଚାୟତ ସମିତି, ଛେଣ୍ଡିପଦା , ଅନୁଗୋଳ*
*ତା.୨୪.୦୭.୦୮*

# ବାର୍ତ୍ତା

ଭାରତ ବର୍ଷର ଶେଷ ସ୍ୱାଧୀନ ରାଜାର ଗୌରବ ଲାଭ କରିଥିବା ରାଜା ସୋମନାଥ ସିଂହ ଜଗଦେବଙ୍କ ପବିତ୍ର ଜୟନ୍ତୀ ଉପଲକ୍ଷେ ଓ ତାଙ୍କର ମହନୀୟ ଜୀବନ ଗାଥାର ବାର୍ତ୍ତା ପ୍ରଚାର ଉଦ୍ଦେଶ୍ୟରେ ଏକ ସ୍ମରଣିକା ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ।

ରାଜା ସୋମନାଥ ସିଂହ ଖୁବ୍ କମ୍ ବୟସରେ ଶତ୍ରୁ ପ୍ରାଧାନ୍ୟ ସମୟରେ ଏକ ଅନଗ୍ରସର ରାଜ୍ୟର ଶାସନଭାର ଗ୍ରହଣ କରିଥିଲେ ମଧ୍ୟ ନିଜର ପ୍ରତ୍ୟୁତ୍ପନ୍ନମତି, ବୁଦ୍ଧିମତା ଓ କାର୍ଯ୍ୟଦକ୍ଷତା ବଳରେ ଏକ ଶ୍ରେଷ୍ଠ ଶାନ୍ତିପୂର୍ଣ୍ଣ ରାଜ୍ୟରେ ପରିଣତ କରିପାରିଥିଲେ । ବିଦେଶୀ ଶତ୍ରୁ ବିରୋଧରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବେ ସଂଗ୍ରାମ କରି ସେ ଶେଷ ସ୍ୱାଧୀନ ରାଜାର ଗୌରବ ହାସଲ କରିବାରେ ମଧ୍ୟ ସକ୍ଷମ ହୋଇଥିଲେ ।

ଏହି ଭଳି ଜଣେ ଅସାଧାରଣ, ଯଶସ୍ୱୀ ବ୍ୟକ୍ତିତ୍ୱଙ୍କ ସ୍ମୃତି ଉଦ୍ଦେଶ୍ୟରେ ପ୍ରକାଶ ପାଉଥିବା ସ୍ମରଣିକାଟିର ଉତ୍ତୋରୋତ୍ତର ଉନ୍ନତି କାମନା କରିବା ସହ ଏଥିରେ ସଂଶ୍ଲିଷ୍ଟ କମିଟିର ସମସ୍ତ ସଦସ୍ୟ ମାନଙ୍କ ସକ୍ରିୟ ଉଦ୍ୟମକୁ ସାଧୁବାଦ ଜଣାଉଛି ।

ନିର୍ମଳ ଚନ୍ଦ୍ର ମିଶ୍ର
ଉପ ଜିଲ୍ଲାପାଳ , ତାଳଚେର



ବିଜନ କୁମାର ଥମ୍ବ (ଓ.ପ୍ର.ସେ)
ତହସିଲଦାର, ତାଳଚେର

# ବାର୍ତ୍ତା

ଅନୁଗୋଳର ଶେଷ ସ୍ୱାଧୀନ ରାଜା ଶ୍ରୀ ସୋମନାଥ ସିଂହ ମର୍ଦ୍ଦରାଜ ବୀରବୀର ମହାନ୍ଦ୍ର ଜଗଦେବ ବ୍ରିଟିଶ ସହିତ ୧୮ବର୍ଷ ବ୍ୟାପି ସ୍ୱାଧୀନତା ସଂଗ୍ରାମ ଚଳାଇ କେତେକ ବିଶ୍ୱାସ ଘାତକଙ୍କ ପାଇଁ ତା.୧.୨.୧୮୪୮ ରିଖ ଦିନ ବ୍ରିଟିଶ ମାନଙ୍କ ଦ୍ୱାରା ବନ୍ଦୀ ହେଲେ । ତା.୨.୬.୧୮୫୩ ଦିନ ହଜାରିବାଗ ଜେଲରେ ତାଙ୍କର ଜୀବନ ଦୀପ ନିର୍ବାପିତ ହୋଇଥିଲା । ଦୁଃଖର ବିଷୟ ଏକଥା ଇତିହାସରେ ଲିପିବଦ୍ଧ ହୋଇ ପାରିନାହିଁ । ଅଗଷ୍ଟ ୧୧ତାରିଖ ଦିନ ତାଙ୍କର ଜନ୍ମ ଜୟନ୍ତୀ ପାଳନ ହେଉଥିବାରୁ ସ୍ମୃତି କମିଟିର କର୍ମକର୍ତ୍ତା ଓ ସହଯୋଗ କରୁଥିବା ବ୍ୟକ୍ତି ମାନଙ୍କୁ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଜ୍ଞାପନ କରୁଅଛି ।

(ତହସିଲଦାର, ତାଳଚେର)

# ସୂଚୀପତ୍ର


| କ୍ର.ନଂ. | ଲେଖା | ଲେଖକ | ପୃଷ୍ଠା |
|---|---|---|---|
| ୧ | କିଛିତେ ଦୟା ନୋହିଲା | ସୋମନାଥ ସିଂହ ଜଗଦେବ | ୧ |
| | **ସୋମନାଥ ସ୍ମରଣେ** (ଗଦ୍ୟ) | | |
| ୨ | ଇଂରେଜ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅନୁଗୁଳର ପ୍ରତିରୋଧ | ଡ଼ଃ. ବିପିନ ବିହାରୀ ସାହୁ | ୨ |
| ୩ | ରାଜକବି ସୋମନାଥ ସିଂହଙ୍କ ସାହିତ୍ୟିକ ପ୍ରତିଭା ଓ ଅନୁଗୋଳ ଅସ୍ମିତା | ଶ୍ରୀ ଧରଣୀଧର ନାଥ | ୧୨ |
| ୪ | ଅନୁଗୋଳ ରାଜବଂଶ, ସୋମନାଥ ସିଂହଙ୍କ ପୂର୍ବ ଓ ପର | ଅଧ୍ୟକ୍ଷ ଶ୍ରୀ ବଂଶୀଧର ପ୍ରଧାନ | ୨୦ |
| ୫ | ରାଜ ଚକ୍ରବର୍ତ୍ତୀ ବୀର ସୋମନାଥ ସିଂହ ଜଗଦେବ | ତ୍ରେତାନନ୍ଦ ସାମନ୍ତ | ୨୫ |
| ୬ | କୃଷ୍ଣଚନ୍ଦ୍ର ଗଡ଼ର ସୁରକ୍ଷା ଓ ବିକାଶ ଜିଲ୍ଲାପାଳଙ୍କୁ ଚିଠିର ନକଲ | ସ୍ମୃତି କମିଟି | ୨୬ |
| ୭ | ଯୁଗଜନ୍ମା ମହାପୁରୁଷ କବିଚନ୍ଦ୍ର ଲାଟ୍ ନୃସିଂହ ରାଜଗୁରୁ | ହେମନ୍ତ କୁମାର ଧର | ୨୯ |
| ୮ | ସର୍ଦ୍ଦାର ନୀଳକଣ୍ଠ ବିଧାର ଉତ୍ତର କବାଟ | ଡ଼ଃ. ଚୈତନ୍ୟ ସାହୁ | ୩୨ |
| ୯ | ସ୍ୱାଧୀନତା ସଂଗ୍ରାମର ଅଗ୍ରଗାମୀ ସାରଥୀ ସୋମନାଥ ସିଂହ ଜଗଦେବ | ଡ଼ଃ. ଜୟାନନ୍ଦ ନାୟକ | ୩୩ |
| ୧୦ | Annexation of Angul 1848, A Political Expediency.... | Dr. Ramamanjari Sahu | ୩୪ |
| | **ଖ (କବିତା ବିଭାଗ)** | | |
| ୧୧ | ଅମର ସିଏ ଏ ବୀର ଭୂମେ | ହାଡ଼ିବନ୍ଧୁ ମିଶ୍ର | ୩୬ |
| ୧୨ | ସ୍ମୃତିର ସ୍ୱାକ୍ଷର | ଅନିଲ ମିଶ୍ର | ୪୦ |
| ୧୩ | ହେ ମହାତ୍ମା, ତୁମ ପାଦତଳେ | ଶ୍ରୀମତୀ ଗୀତାମୟୀ ମହାପାତ୍ର | ୪୧ |
| ୧୪ | ରାଜା ତ ରାଜା ସୋମନାଥ ସିଂ ରାଜା | ଅନିଲ ଦେହୁରୀ | ୪୨ |
| ୧୫ | କୃଷ୍ଣଚନ୍ଦ୍ର : ଏକାଦଶ ସର୍ଗ | ଗୋବିନ୍ଦ ରାଜଗୁରୁ | ୪୩ |
| ୧୬ | ବିଧିଲିପି | ସୁଧାକର ପଟ୍ଟନାୟକ | ୪୯ |

## ଅନୁଗୋଳ ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଜୀବନୀ


| | | | |
|---|---|---|---|
| ୧୭ | ଦେଶ ହିତୈଷୀ : ରତ୍ନାକର .... | ଡ଼ଃ ସନତ୍ କୁମାର ମିଶ୍ର | ୫୦ |
| ୧୮ | ସ୍ୱାଧୀନତା ସଂଗ୍ରାମୀ ଆନନ୍ଦ ଚନ୍ଦ୍ର ପ୍ରଧାନ | ଶ୍ରୀ ଧନେଶ୍ୱର ପ୍ରଧାନ | ୫୨ |


## ସାହିତ୍ୟ ବିଭାଗ (ଗଦ୍ୟ)


| | | | |
|---|---|---|---|
| ୧୯ | ପଘାଛିଡ଼ା କବିତା | ରମେନ୍ଦ୍ର କୁମାର | ୫୩ |
| ୨୦ | ପ୍ରାପ୍ତି | ଇଂ. ପାର୍ଥସାରଥି ପାତ୍ର | ୫୫ |
| ୨୧ | ଦ୍ରୁତ ଶିଳ୍ପାୟନ : ବନାମ କଂପାନୀ ରାଜ | ପ୍ରଦୀପ ପଣ୍ଡା | ୬୧ |
| ୨୨ | ସ୍ୱାଭିମାନୀ ଓଡ଼ିଆ | ଡ଼ଃ. କୁଞ୍ଜବିହାରୀ ପ୍ରଧାନ | ୬୪ |
| ୨୩ | ସୃଷ୍ଟିର ସୁରକ୍ଷା ଓ ବିକାଶରେ ସାହିତ୍ୟର ଭୂମିକା | ଅଜୟ ଭାଇ | ୬୬ |
| ୨୪ | ଶ୍ରୀ ହରିନାମ ସଂକୀର୍ତ୍ତନର ବ୍ୟବସ୍ଥା କାହିଁକି ? | ମାୟାଧର ସାହୁ | ୬୯ |
| ୨୫ | କି ଥିଲା ଏ ରାଜ୍ୟ ? | ପ୍ରତାପ କୁମାର ଦ୍ୱିବେଦୀ | ୭୨ |
| ୨୬ | କୋକୁଆ ଭୟ | ସୁଧାକର ପଟ୍ଟନାୟକ | ୭୩ |
| ୨୭ | ମହାରାଜା ସୋମନାଥ ସିଂହ ଜଗଦେବ : ଏକ ବିରଳ ବ୍ୟକ୍ତିତ୍ୱ | ପ୍ରଫେସର ମୀନକେତନ ପୁରୋହିତ | ୭୩ |
| ୨୮ | ସର୍ବଶିକ୍ଷା ଅଭିଯାନ : ଶହେବର୍ଷ ତଳର | ଶ୍ରୀ ଈଶ୍ୱର ଚନ୍ଦ୍ର ପ୍ରଧାନ | ୭୮ |


## ସାହିତ୍ୟ ବିଭାଗ (ପଦ୍ୟ)


| | | | |
|---|---|---|---|
| ୨୯ | କଳିଯୁଗ ଭାଗବତ | ରାଜା ପୂର୍ଣ୍ଣଚନ୍ଦ୍ର ଦେଓ ଭଞ୍ଜ | ୭୯ |
| ୩୦ | ସୁନାଶଗଡ଼ | ସୁଭାଷ ଚନ୍ଦ୍ର ମହାପାତ୍ର | ୮୦ |
| ୩୧ | ଅନୁଗୋଳ | ଡ଼ଃ. ଇନ୍ଦିରା ଦାଶ | ୮୧ |
| ୩୨ | ଶବାଶନରେ ବୀର ଓଡ଼ିଆ | ବିପ୍ର ଆଚାର୍ଯ୍ୟ | ୮୨ |
| ୩୩ | ମହାରାଜା ସୋମନାଥ ସିଂହ ଜଗଦେବ ସ୍ମରଣେ | ଡ଼ଃ ସଦାନନ୍ଦ ପରିଡ଼ା | ୮୩ |
| ୩୪ | ଚିକିତ୍ସକଙ୍କୁ ଆହ୍ୱାନ | ଶ୍ରୀମତୀ ବିଜୟ ଲକ୍ଷ୍ମୀ ମାଝୀ | ୮୪ |
| ୩୫ | କନ୍ୟାଭ୍ରୁଣ | ଶ୍ରୀମତୀ ପୁଷ୍ପ ପ୍ରଧାନ | ୮୫ |
| ୩୬ | ବନ୍ଦୀ ଆସାମୀ | ବିଭୂତି ଭୂଷଣ ବେହେରା | ୮୫ |
| ୩୭ | ସତକୁହ ପ୍ରଭୁ | ଶାନ୍ତିଲତା ରଥ | ୮୬ |
| ୩୮ | ପ୍ରତୀକ୍ଷା | ରୋହିତ କୁମାର ନାଥ | ୮୬ |



# କିଞ୍ଚିତେ ଦୟା ନୋହିଲା

-ସୋମନାଥ ସିଂହ ଜଗଦେବ-

କିଞ୍ଚିତେ ଦୟା ନୋହିଲା
କମଳ ଲୋଚନ ପ୍ରଭୁ ଥାଉ ଥାଉ
ମୋ କର୍ମ ବିଫଳ ହୋଇଲା ହେ ।।ଘୋଷା।।
ନୀଳାଚଳେ ଥାଇ ଡ଼ାକିଲେ ନଶୁଣ
ଏକଥା ସନ୍ଦେହ ଲାଗିଲା,
କେତେ ଦୂରେ ଗଜରାଜ ସୁମରନ୍ତେ
ସେକଥା କର୍ଣ୍ଣକୁ ଶୁଭିଲା ହେ ..।।
ମହାଘୋର କଷ୍ଟୁ ଗାନ୍ଧାରୀ ନନ୍ଦନ
ସଭାରୁ ଦ୍ରୌପଦୀ ତରିଲା
କୋଟି ବସ୍ତ୍ର ପାଇ ଭାନୁମତୀ ପତି
ବଦନେ କାଳି ଲଗାଇଲା ହେ......।
ଆହୁରି କଥାଏ ଶୁଣିଅଛି କର୍ଣ୍ଣେ
ପାଷାଣ ଯୁବତୀ ହୋଇଲା
ଶ୍ରୀରଘୁନନ୍ଦନ ଚରଣ ଲାଗିଣ
ପତି ଭକ୍ତେ ଲେଖା ହୋଇଲା ହେ....।
ଘୋର ବନେ ପରା କୁରଙ୍ଗୀ ନନ୍ଦନ,
କୁରଙ୍ଗୀକି ଦଶା ପଡ଼ିଲା
ଦୀନବନ୍ଧୁ ନାମ ହୃଦରେ ଧରନ୍ତେ
କେଡ଼େ ବିପତ୍ତି ତା ଛାଡ଼ିଲା ହେ....।
କମଳା କାନ୍ତକୁ ଭରଷା କରିଣ
ଲୋକହସା ଏବେ ହୋଇଲା
ଭାଷେ ସୋମନାଥ ଅନୁକୂଳ ପତି
ଏ ନିନ୍ଦା କାହାକୁ ହୋଇଲା ହେ...।

❋❋❋

*(ସୂଚନା ଓ ଲୋକସମ୍ପର୍କ ବିଭାଗ, ଓଡ଼ିଶା ସରକାରଙ୍କ ଦ୍ବାରା ପ୍ରକାଶିତ ଶ୍ରୀ ଜଗନ୍ନାଥ ଭଜନ, ଜଣାଣ ଓ ଚଉତିଶା-୨୦୦୬ ଗ୍ରନ୍ଥର ୬୩ ନମ୍ବର ଜଣାଣ ।)*

ସଂପାଦକ

### ସୋମନାଥ ସ୍ମରଣେ

### (କ) ଗଦ୍ୟ ବିଭାଗ

# ଅନୁଗୁଳରେ ଇଂରେଜ ସାମ୍ରାଜ୍ୟବାଦର ପ୍ରତିରୋଧ

ଡ଼ଃ. ବିପିନ ବିହାରୀ ସାହୁ

ଆମ ଧନ ରତ୍ନ ଲୁଣ୍ଠନ ପାଇଁ
ବିଦେଶରୁ ଖଣ୍ଟ ଆସିଲେ ଧାଇଁ
ଗୁଳିଗୁଳା ଛନ୍ଦଭେଦ କୌଶଳ
କରି ଭାଙ୍ଗିଦେଲେଆମର ବଳ
ଭାଙ୍ଗିଲେ ଆମ ଏକତା
ଆମେ ଭାଇଭାଇଏକଜୁଟ ନୋହି
. ଚାଟିଲେ ଖଣ୍ଟର ଜୋତା ।
(ତମ ଦାଢ଼ିରାଣ - ଡ଼ଃ. ବି.ବି.ସାହୁ)

ସଂକ୍ଷିପ୍ତରେ ଏହାହିଁ ଆମ ଭାରତର ବାରଶହ ବର୍ଷ ପରାଧୀନତାର କାରଣ । ଅନ୍ୟ ସମସ୍ତ ବିଦେଶୀ ଶକ୍ତିକୁ ପରାସ୍ତ କରି ଏକା ଇଂରେଜ ଉର୍ଦ୍ଧ୍ୱ ଦୁଇଶତ ବର୍ଷ ଆମକୁ ତା ଅଧୀନରେ ରଖିଲା । ଯେଉଁ ମୁଷ୍ଟିମେୟ ବ୍ୟକ୍ତି ବା ଗୋଷ୍ଠୀ ଇଂରେଜ ସାମ୍ରାଜ୍ୟବାଦ ବିରୁଦ୍ଧରେ ଖଡ଼ଗ ଉତ୍ତୋଳନ କରିଥିଲେ ଅନୁଗୋଳ ତା ମଧ୍ୟରେ ଅନ୍ୟତମ । ଇଂରେଜ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅନୁଗୁଳ ଦୁଇଟି ପର୍ଯ୍ୟାୟରେ ସଂଗ୍ରାମ କରିଥିଲା । ପ୍ରଥମ ପର୍ଯ୍ୟାୟରେ ଊନବିଂଶ ଶତାବ୍ଦୀରେ ଅନୁଗୋଳ ଶେଷରାଜା ସୋମନାଥ ସିଂହଙ୍କର ଖଡ଼ଗ ଉତ୍ତୋଳନ ଓ ଦ୍ୱିତୀୟ ପର୍ଯ୍ୟାୟରେ ମହାତ୍ମାଗାନ୍ଧୀଙ୍କ ଦିଗ୍‌ଦର୍ଶନରେ ଅହିଂସା ସଂଗ୍ରାମ ।

ପ୍ରଥମ ପର୍ଯ୍ୟାୟ

**ମହାରାଜା ସୋମନାଥ ସିଂହ ଜଗଦେବ (ତା.୧୧.୮.୧୮୦୦ ରୁ ତା. ୨.୬.୧୮୫୩)**

ଇଂରେଜଦ୍ୱାରା ଅଭିଷିକ୍ତ , ପ୍ରଶଂସିତ, ପୁରସ୍କୃତ ହୋଇ ମଧ୍ୟ ସ୍ୱାଧୀନତା ଓ ଦେଶ ମାତୃକାର ସ୍ୱାଭିମାନ ନିମିତ୍ତ ସୋମନାଥ ସିଂହ ପ୍ରବଳ ପ୍ରତାପୀ ଇଂରେଜ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କରିଥିଲେ ।

**ବ୍ୟାକାପ୍ତି ପରିବର୍ତ୍ତେ ରାଜ୍ୟ ପ୍ରାପ୍ତି :**

ଅନୁଗୋଳ ରାଜା ଜୟ ସିଂହ , ତାଙ୍କ ନାଁ ବାଳକ ଡି ପୁତ୍ର ଭାଇ ଗୋପୀନାଥ ସିଂହ , ସେବକ ଦକ୍ଷିଣ କବାଟ ଅଜ୍ଞାତ ଆତତାୟୀ ଦ୍ୱାରା ୧୮୦୯ର ଏକ କାଳରାତ୍ରିରେ ନିହତ ହେଲେ । ଗୋପୀନାଥ ସିଂହ ଙ୍କର ବିଧବା ପତ୍ନୀ ସୁଲୋଚନା ସେହି କାଳରାତ୍ରିର ଘନଘଟା ମଧ୍ୟରେ ଶିଶୁପୁତ୍ର ସୋମନାଥ କୁ ଧରି ଗୋପନରେ ପଳାୟନ କରି ପିତ୍ରାଳୟ ନିମାପଡ଼ା ଜମିଦାରଙ୍କ ଆଶ୍ରୟରେ ରହିଲେ । ରାଣୀ ସତୀ ହେଲେ । ବିମାତା ପୁତ ପୃଥ୍ୱୀ ସଂହ ଗାଦି ମାଡ଼ି ବସିଲେ ମଧ୍ୟ ଅନ୍ତର୍ଦ୍ୱନ୍ଦ ଲାଗି ରହିଲା । ସରକାର ରାଜପଦବୀ ଉଚ୍ଛେଦ କରିବାକୁ ସ୍ଥିର କଲେ । ଶେଷ ମୁହୂର୍ତ୍ତରେ ନିମାପଡ଼ା ଜମିଦାରଙ୍କ ଦରଖାସ୍ତକୁ ବିଚାରକୁ ନେଇ ତା.୩/୧୦/୧୮୧୪ ରେ ଚଉଦବର୍ଷୀୟ ସୋମନାଥ ସିଂହଙ୍କୁ ଅନୁଗୋଳର ରାଜଗାଦିରେ ଅଭିଷେକ କଲେ । ସାବାଳକ ହେବା ପରେ ୧୯୧୯ରେ ସୋମନାଥ ସିଂହ ଶାସନ ନିଜହାତକୁ ନେଲେ । ସେହି ବର୍ଷ ସେ ତାଳଚେର ରାଜାଙ୍କ ଜ୍ୟେଷ୍ଠକନ୍ୟା ରାଜକୁମାରୀ ପ୍ରୀତିମଞ୍ଜରୀଙ୍କ ପାଣିଗ୍ରହଣ କଲେ । ଆରମ୍ଭରୁ ତାଙ୍କ

ରାଜକୀୟ ପ୍ରତିଭାର ପରିଚୟ ମିଳିଲା ।

**ସୋମନାଥ ସିଂହ ଜଗଦେବଙ୍କ ଉତ୍‌ଥାନ :**

**୧. ଆଠମଲ୍ଲିକ ମେଳି :**

୧୮୨୦ରେ ଆଠମଲ୍ଲିକର ମଲ୍ଲିକ ମାନେ ନିଜ ରାଜାଙ୍କ ବିରୁଦ୍ଧରେ ସଶସ୍ତ୍ର ମେଳି କଲେ । ଆଠମଲ୍ଲିକ ରାଜା ସରକାରଙ୍କ ଶରଣାପନ୍ନ ହେଲେ । ସରକାରଙ୍କ ଅନୁରୋଧ କ୍ରମେ ସୋମନାଥ ସିଂହ ଚତୁରତା ସହ ଉଭୟ ପକ୍ଷକୁ ସନ୍ତୁଷ୍ଟକରି ଏକ ନିଶ୍ଚିତ ଗୃହଯୁଦ୍ଧରୁ ଆଠ ମଲ୍ଲିକକୁ ରକ୍ଷାକଲେ । ଆଠମଲ୍ଲିକ ରାଜା ପ୍ରୀତ ହୋଇ ନିଜ କନ୍ୟା ଦାନ ସହ ଚାରିମଲ୍ଲିକ ଅଞ୍ଚଳ ଯୌତୁକ ଦେଲେ । ସରକାର ମଧ୍ୟ ପ୍ରଶଂସା ପତ୍ର ସହ ୩୦୦୦ଟଙ୍କା ପୁରସ୍କାର ଦେଲେ ।

**୨. ବୁଢ଼ାପଙ୍କ ଯୁଦ୍ଧ : ୧୮୨୫**

ଢେଙ୍କାନାଳ ରାଜା ୧୮୨୫ରେ ଅନୁଗୋଳର ବୁଢ଼ାପଙ୍କ ଦୁର୍ଗ ଆକ୍ରମଣ କଲେ । ସୋମନାଥ ସିଂହ ପ୍ରଥମ ଦିନ ହିଁ ତାଙ୍କୁ ପରାସ୍ତ କଲେ ।

**୩. ହିନ୍ଦୋଳକୁ ସୁରକ୍ଷା :**

୧୮୩୧ମସିହାରେ ସୈନ୍ୟ ଓ ଧନବଳ ଦେଇ ହିନ୍ଦୋଳ ରାଜାଙ୍କୁ ସୁରକ୍ଷା ଦେଲେ ।

୪. ୧୮୩୬ରେ ଗାଦିଚ୍ୟୁତ ତାଳଚେର ରାଜାଙ୍କୁ ପୁନଃ ଗାଦିନାସୀନ କଲେ ।

୫. ୧୮୩ରେ ତିଗିରିଆ ରାଜ୍ୟକୁ ବାହ୍ୟ ଆକ୍ରମଣରୁ ରକ୍ଷାକଲେ ।

ଏହିପରି ତାଙ୍କ ଯଶ ବ୍ୟାପିଲା । ସର୍କାର ତାଙ୍କୁ ମହାରାଜା ତୁଲ୍ୟ ସମ୍ମାନ ଦେଲେ । ଏଥିରେ ପଡ଼ିଶା ରାଜାମାନେ ଭୀତ ଓ ଈର୍ଷାନ୍ୱିତ ହେଲେ ।

**ସୋମନାଥ ସିଂହଙ୍କ ପତନ :**

**୧. ସ୍ୱାଧୀନ ଚେତନା ଓ ସ୍ୱାଭିମାନ :** ବିଦେଶୀକୁ କର ଦେଇ ନିଜ ରାଜ୍ୟ ଶାସନ କରିବାକୁ ଅପମାନ ମନେକରି ସେ ଇଂରେଜକୁ କର ଦେବା ବନ୍ଦ କରିଦେଲେ । ସେହିପରି ଆନ୍ତଃରାଜ୍ୟ ବ୍ୟବସାୟୀ ମାନଙ୍କଠାରୁ କର ଆଦାୟ କରିବା ସର୍କାରୀ ନିଷିଦ୍ଧ ସତ୍ତ୍ୱେ ସର୍କାରଙ୍କୁ ଜଣାଇ ସେ କର ଆଦାୟ କରୁଥିଲେ । ତାଙ୍କର ଯୁକ୍ତି ଥିଲା ଯେ, ଏହି ବ୍ୟବସାୟୀମାନଙ୍କ ସୁରକ୍ଷା ନିମିତ୍ତ ସେ ବିପୁଳ ଅର୍ଥ ବ୍ୟୟ କରୁଛନ୍ତି । ଅନ୍ୟ ରାଜାମାନେ ଲୁଚାଛପା କର ଆଦାୟ କରୁଥିଲେ ।

**କମିସନର ଓ ଅନ୍ୟମାନଙ୍କ ମତ :**

କମିସନର ରିକେଟ୍‌ସ୍ , ମିଲ୍‌ସ ଓ ଐତିହାସିକ ଲରିଙ୍କ ମତରେ ସୋମନାଥ ସିଂହ ଥିଲେ ଅତି ଜ୍ଞାନୀ , ବୁଦ୍ଧିମାନ , ଚତୁର ମାତ୍ର ଝୁଙ୍କୀ , ଗର୍ବୀ , ସ୍ୱାଭିମାନୀ ଓ ଶାସନାତୀତ ଅବାଧ୍ୟ । ନିଜର ଭବିଷ୍ୟତ ପ୍ରତି ଭ୍ରୂକ୍ଷେପ ନକରି ସେ ସର୍କାରଙ୍କ ସାମାନ୍ୟତମ ହସ୍ତକ୍ଷେପକୁ ଆଦୌ ମାନୁ ନଥିଲେ । ଏଣୁ ସର୍କାରଙ୍କ ସହ ସଂଘର୍ଷ ହେବା ସ୍ୱାଭାବିକ ।

**୨. ଢେଙ୍କାନାଳର ଷଡ଼ଯନ୍ତ୍ର :** ସୋମନାଥ ସିଂହଙ୍କ ପ୍ରତିପତ୍ତିରେ ପ୍ରତିବେଶୀ ରାଜାମାନେ ଭୀତ ଈର୍ଷାନ୍ୱିତ ହେଲେ । ଢେଙ୍କାନାଳ ନେତୃତ୍ୱରେ ହିନ୍ଦୋଳ, ଆଠଗଡ଼, ବଉଦ, ଦଶପଲ୍ଲା, ବଡ଼ମ୍ବା , ଆଠମଲ୍ଲିକ , ସୁକିନ୍ଦା, ଦର୍ପଣୀ, ନରସିଂହପୁର ଆଦି ରାଜାମାନେ ମିଳିତ ହୋଇ ନାନା ମିଥ୍ୟା ଅଭିଯୋଗ , ଚୁଗୁଲି କରି ରାଜା ଓ ସର୍କାରଙ୍କ ମଧ୍ୟରେ ଫାଟ ସୃଷ୍ଟି କଲେ । କ୍ଷମତାଲିପ୍ସୁ ସର୍କାରୀ କର୍ମଚାରୀ ଓ ରାଜାଙ୍କ ଦିବାନ କମଳଲୋଚନ ପଟ୍ଟନାୟକ ଦଲାଲ ସାଜି ଏଥିରେ ଇନ୍ଧନ ଯୋଗେଇଲେ ।

**୩. ଦଶପଲ୍ଲାର ମିଥ୍ୟାଅଭିଯୋଗ :** ୧୮୩୧ରେ ଦଶପଲ୍ଲା ରାଜା ଏକ ମିଥ୍ୟା ଅଭିଯୋଗ କଲେ ଯେ

ସୋମନାଥ ସିଂହ ତାଙ୍କର ଏକ ଗ୍ରାମ ପୋଡ଼ି ଦେଇଛନ୍ତି।

**୪. ବଉଦର ମିଥ୍ୟା ଆରୋପ :** ବଉଦ ଅଭିଯୋଗ କଲେ ଯେ ସୋମନାଥ ସିଂହ ତାଙ୍କର ଦୁଇଟି ଗ୍ରାମ ଲୁଣ୍ଠନ କରିଛନ୍ତି।

**୫. ମିଥ୍ୟା ନରହତ୍ୟା ଅଭିଯୋଗ :** ୧୮୩୭ରେ କନ୍ଧମେଳିରେ ନିଯୁକ୍ତ ସୈନ୍ୟମାନେ ୬ଜଣ ନିରୀହ ଲୋକଙ୍କୁ ମାରି ଅନୁଗୋଳ ସୀମା ଭିତରକୁ ଫୋପାଡ଼ି ଦେଇ ସୋମନାଥ ସିଂହଙ୍କ ମୁଣ୍ଡରେ ଦୋଷ ଲଦିଲେ।

**୬. ହିନ୍ଦୋଳ ବିବାଦ :** ୧୮୪୬ରେ ସୋମନାଥ ସିଂହ ହିନ୍ଦୋଳ କୁରୁମିଠା ଗ୍ରାମ କିଣିଛନ୍ତି ବୋଲି ଦାବୀ କରି ଦଖଲ କଲେ। ହିନ୍ଦୋଳ ଅଭିଯୋଗ କ୍ରମେ ସର୍କାର ସୋମନାଥ ସିଂହଙ୍କୁ ୩୦୦୦ଟଙ୍କା ଜୋରିମନା କଲେ ଓ ଏ ଗ୍ରାମ ଖାଲି କରି ଦେବାକୁ ଆଦେଶ ଦେଲେ । ସୋମନାଥ ସିଂହ ଉଭୟ ଆଦେଶ ଅବଜ୍ଞା କରି ଧମକ ଦେଲେ ଯେ, ବଳର ଜବାବ ସେ ବଳରେ ଦେବେ। ବାଧ୍ୟ ହୋଇ ସର୍କାର ମୁଣ୍ଡ ନୁଆଁଇଲେ।

**୭. ପଣ୍ଡିମାଯାତ୍ରୀଙ୍କୁ ହତ୍ୟାର ମିଥ୍ୟା ଅଭିଯୋଗ :**

**୮. ଆଣୁଗଣ୍ଡି ବାଟ ହେତୁ ରାଜା ଚଳତ୍ ଶକ୍ତି ରହିତ :**

**୯. କନ୍ଧମେଳି :**

ପାରଳାଖେମୁଣ୍ଡି, ଘୁମୁସର,କନ୍ଧମାଳ, ବଉଦ, ଦଶପଲ୍ଲା ଆଦି ଅଞ୍ଚଳ ମାଳ ଅଞ୍ଚଳ ବା Agency Area ଭାବେ ଚିହ୍ନିତ। ଏହି ଅଞ୍ଚଳ କନ୍ଧମାନଙ୍କ ଘନ ଜନବସତି । ହଳଦୀ ଚାଷ କନ୍ଧମାନଙ୍କର ମୁଖ୍ୟ ଜିବୀକା । ହଳଦୀ କିଆରୀରେ ନରବଳି (ମେରିଆ ଦେବ) କନ୍ଧମାନଙ୍କର ପୁରାତନ ଧର୍ମପ୍ରଥା। ଏହି ବର୍ବର ପ୍ରଥାକୁ ଉଚ୍ଛେଦ କରିବାକୁ ସର୍କାର ବିରାଟ ସେନା ବାହିନୀ ନିଯୁକ୍ତ କଲେ। ସେନାଧ୍ୟକ୍ଷ Agency Officer କ୍ୟାପ୍‌ଟେନ୍ ମ୍ୟାକ୍‌ଫରସନ୍ ଓ କ୍ୟାପଟେନ୍ କେଡ୍ରେନ୍ ହେଡ୍ ଅତି ବର୍ବର ଅମାନୁଷିକ ଅତ୍ୟାଚାର ଦ୍ୱାରା ଏହା ଦମନ କରିବାକୁ ଲାଗଲେ। ହତ୍ୟା , ଲୁଣ୍ଠନ , ଧର୍ଷଣ , ଗୃହଦାହ , ବାଧ୍ୟତାମୂଳକ ମାଗଣା ଶ୍ରମ ଓ ରସଦ ଆଦି ଅତ୍ୟାଚାର ହେତୁ ପ୍ରଜାମାନେ ଭିଟାମାଟି ଛାଡ଼ି ସୀମାନ୍ତ ଅନୁଗୋଳ ଜଙ୍ଗଲରେ ଲୁଚିଲେ। ପୂର୍ବରୁ ୧୮୩୫ରେ ଘୁମୁସର ରାଜାଙ୍କୁ ଅନ୍ୟାୟ ଭାବେ ଗାଦିଚ୍ୟୁତ କରି ରାଜ୍ୟ ବ୍ୟାଜ୍ୟାପ୍ତ କରିଥିବାରୁ ରାଜା ଜଙ୍ଗଲରେ କନ୍ଧମାନଙ୍କ ଆଶ୍ରୟରେ ଥିଲେ। କନ୍ଧମାନେ ନିଜ ରାଜା ପ୍ରତି ଅନ୍ୟାୟର ପ୍ରତିବାଦ କରି ଇଂରେଜ ସୈନ୍ୟ ଉପରେ ଗରିଲା ଆକ୍ରମଣ କରୁଥିଲେ । ଏବେ ମେରିଆ ଉଚ୍ଛେଦ ହେତୁ ଆକ୍ରମଣ ତୀବ୍ରତର କରିଦେଲେ। ମ୍ୟାକ୍ ଫରସନ୍ ଓ କେଡ୍ରେନ୍ ହେଡ୍ ଅଭିଯୋଗ କଲେ ଯେ ସୋମନାଥ ସିଂହ କନ୍ଧମେଳିକୁ ପ୍ରୋତ୍ସାହନ କରୁଛନ୍ତି। ରାଜା ଇଂରେଜ ବିରୋଧୀ, ଦୁଷ୍ଟ , ଲୁଣ୍ଠନକାରୀ, ହତ୍ୟାକାରୀ ଇତ୍ୟାଦି।

**ଅଭିଯୋଗର ତଦନ୍ତ ଓ ରିପୋର୍ଟ :**

**କ) କ୍ୟାପଟେନ୍ ଡ଼ନ୍‌ଲପ୍‌ଙ୍କ ତଦନ୍ତ ରିପୋର୍ଟ :** ତା.୧.୪.୧୮୪୭ ଓ ତା.୮.୪.୧୮୪୭ ରେ ଡ଼ନ୍‌ଲପ୍ ତଦନ୍ତ ରିପୋର୍ଟ ଦେଲେ ଯେ, ରାଜା ସଂପୂର୍ଣ୍ଣ ନିର୍ଦ୍ଦୋଷ। ମ୍ୟାକ୍‌ଫରସନ୍ ଓ କେଡ୍ରେନ୍ ହେଡ୍ କରିଥିବା ସମସ୍ତ ଅଭିଯୋଗ ମିଥ୍ୟା ଓ ମନ୍ଦ ଉଦ୍ଦେଶ୍ୟ ପ୍ରଣୋଦିତ।

**ଖ) ବ୍ରିଗେଡ଼ିଅର ଜେନେରାଲ ଡ଼ାଇସ୍‌ଙ୍କ ତଦନ୍ତ ରିପୋର୍ଟ :**

ତା. ୨୦.୩.୧୮୪୭ । ମୋର ଦୃଢ଼ବିଶ୍ୱାସ ଯେ, ମ୍ୟାକ୍ ଫରସନ୍, କେଡ୍ରେନ୍ ହେଡ୍, ବିରାଟ

ସେନା , ଦଳବଳ ଥିବା ପର୍ଯ୍ୟନ୍ତ ଏ ଅଞ୍ଚଳରେ ଶାନ୍ତି ପ୍ରତିଷ୍ଠା ଅସମ୍ଭବ । ଏମାନଙ୍କ ଅତ୍ୟାଚାର ହେତୁ ନିରୀହ ପ୍ରଜାଟିଏ ମଧ୍ୟ ଏମାନଙ୍କୁ ଘୃଣାକରେ । ବିଡ଼ମ୍ବନା ଯେ ଏମାନେ ନିଜର ସମସ୍ତ କୁକର୍ମ ସୋମନାଥ ସିଂହଙ୍କ ମୁଣ୍ଡରେ ଲଦି ଦେଉଛନ୍ତି । ଯଦିଓ ରାଜ୍ୟ ମାଳ ଅଞ୍ଚଳ ବାହାରେ । ରାଜା ସଂପୂର୍ଣ୍ଣ ନିର୍ଦ୍ଦୋଷ ।

**ସରକାରଙ୍କର ଉଦ୍ଦେଶ୍ୟ ମନ୍ଦ :**

ଡ଼ନଲପ୍ ଓ ଡ଼ାଇସ୍‌ଙ୍କ ରିପୋର୍ଟ ସତ୍ତ୍ୱେ ସର୍କାର ସୋମନାଥ ସିଂହଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦର ପ୍ରତିବନ୍ଧକ ଭାବେ ବିଚାର କରୁଥିଲେ । ପୂର୍ବ ଓ ପଶ୍ଚିମ ଓଡ଼ିଶାର ଚେକ୍‌ଗେଟ୍ ର ଚାବିକାଠି ସୋମନାଥ ସିଂହଙ୍କ ହାତରେ - ଏହାହିଁ ଅନୁଗୋଳର ଭୌଗଳିକ ଅବସ୍ଥିତିର ବିଶେଷତ୍ୱ । ସମ୍ବଲପୁରରେ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ । ଚିଫ୍ କମିସନର ଗୁପ୍ତ ଚିଠି ଦେଲେ ସୋମନାଥ ସିଂହଙ୍କୁ ହତ୍ୟା ନହେଲେ ମଧ୍ୟ ଗୋପନ ସ୍ଥାନରେ ବନ୍ଦୀକର ।

**ଗଧିଆ - ମେଣ୍ଢାଛୁଆ ନ୍ୟାୟ :** ଏତେ ସତ୍ତ୍ୱେ ସର୍କାର ଗ୍ରାଣ୍ଟସ୍ ତଦନ୍ତ କମିସନ ବସେଇଲେ । ରାସ୍ତାଘାଟରୁ ରାମା ଶାମାକୁ ଧରି ଆଣି ତଦନ୍ତ ପ୍ରହସନ ହେଲା । ରାଜା ପ୍ରତିବାଦ କଲେ ।

**ଅଧୈର୍ଯ୍ୟ ସରକାର :** କମିସନର ଓ ପ୍ରାଦେଶିକ ସର୍କାରଙ୍କୁ ଉପେକ୍ଷା କରି ସର୍କାର କମିସନରଙ୍କୁ ନିର୍ଦ୍ଦେଶ ଦେଲେ ଅନୁଗୋଳର ସମସ୍ତ ଦୁର୍ଗ ଧ୍ୱଂସ କର ସୈନ୍ୟଚାଳନା ଆରମ୍ଭ ହେଲାଣି ।

**ଯୁଦ୍ଧ ଘୋଷଣା :** ତା. ୧୨.୧୨.୧୮୪୭ରେ ରାଜ୍ୟ ବ୍ୟାଜାପ୍ତ କରି ସର୍କାର ଯୁଦ୍ଧ ଘୋଷଣା କଲେ । ମାନ୍ଦ୍ରାଜ , ସମ୍ବଲପୁର ଓ କଟକରୁ ସେନା ଆଣି କ୍ୟାମ୍ପବେଲ ଅଧିନରେ ଗଠିତ Angul Field Force କୃଷ୍ଣଚନ୍ଦ୍ରଗଡ଼ ଆକ୍ରମଣ କଲେ ।

**କୃଷ୍ଣଚକ୍ର ଗଡ଼ :** ଇଂରେଜର ମନ୍ଦ ଉଦ୍ଦେଶ୍ୟ ପ୍ରତି ରାଜା ସଚେତ ଥିଲେ । ୧୮୩୧ରେ ବନୋର ସବିତ ମାଳା ଭିତରେ ଦୁର୍ଭେଦ୍ୟ କୃଷ୍ଣଚକ୍ରଗଡ଼ ନିର୍ମାଣରେ ପ୍ରତି ଆକ୍ରମଣ ପାଇଁ ପ୍ରସ୍ତୁତ ଥିଲେ ।

**କପଟସନ୍ଧି :** ପ୍ରଥମ ଯୁଦ୍ଧରେ ପରାସ୍ତ ହୋଇ କ୍ୟାମ୍ପବେଲ ନାଗପୁର ରାଜା ଓ ବାମଣ୍ଡା ମଧ୍ୟସ୍ଥତାରେ ଆଉଁଳି ନଦୀ କୂଳରେ ସନ୍ଧିପ୍ରସ୍ତାବ ଦେଲେ କପଟତାର ଆଭାସ ପାଇ ରାଜା କୌଶଳରେ ଖସିଗଲେ । କହିଲେ ମୁଁ ବଳଦ ନୁହେଁ, ମରଦ, ସନ୍ଧି ଚେହେଁନି , ଚାହେଁ ଯୁଦ୍ଧ !

**ହିନ୍ଦୁ ଧର୍ମଢ଼ାଲ :** ହତାଶ କ୍ୟାମ୍ପବେଲ ହିନ୍ଦୁଧର୍ମ ଧାରଣାକୁ ଢ଼ାଲ କରି ପଲପଲ ଗୋରୁ ପଛରେ ଦଳଦଳ ସୈନ୍ୟ ଚାଳନା କଲେ । ସମ୍ମୁଖରେ ଗୋମାତା , ପୃଷ୍ଠରେ ବିଶ୍ୱାସଘାତକ । ଗୋହତ୍ୟା ପାପ ଭୟରେ ରାଜା ଅସ୍ତ୍ର ତ୍ୟାଗ କଲେ । ଗୃହଶତ୍ରୁମାନେ ତୋପ ସର୍ଦ୍ଦାର ମଣି ସାଆନ୍ତାରାକୁ ନିଶାଗ୍ରସ୍ତ କରି ରାମ ଲକ୍ଷ୍ମଣ ତୋପରେ କୋଇଲା ଗୁଣ୍ଡ, ପଙ୍କ ଭରିଦେଲେ । ତା.୧.୨.୧୮୪୮ରେ ଦୁର୍ଗର ପତନ ହେଲା । ଧ୍ୟାନମଗ୍ନ ରାଜା ବନ୍ଦୀ ହେଲେ । ୧୫.୨.୧୮୪୮ କଟକ ଓ ପରେ ହଜାରି ବାଗ କୁ ସ୍ଥାନାନ୍ତରିତ ହେଲେ । କେବ ବ୍ୟାରାକ୍ ନିକଟସ୍ଥ ଏକ ସ୍ୱତନ୍ତ୍ର ବଙ୍ଗଳାରେ ତାଙ୍କୁ ଗୃହବନ୍ଦୀ ଭାବେ ରଖାଗଲା ।

ଅନୁଗୋଳର ବହୁ ବିଶିଷ୍ଟ ବ୍ୟକ୍ତି ଦୁର୍ଗମ ପଥ ଅତିକ୍ରମ କରି ହଜାରିବାଗରେ ରାଜାଙ୍କୁ ଦର୍ଶନ କରି ଆସୁଥିଲେ । ତା୧୮୫୧ରେ କରାଓରପୁର ଶାସନ

ନିବାସୀ ପଣ୍ଡିତ ଜଗବନ୍ଧୁ ସଦସ୍ୟ ଶର୍ମା ମହାରାଜାଙ୍କୁ ସାକ୍ଷାତ କରି ରାଜାଙ୍କ ସ୍ୱହସ୍ତ ଲିଖିତ ଏକ ଚିଠି ଆଣିଲେ । "ବ୍ରିଟିଶ **ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ଜାରି ରଖ"** । ଏ ଚିଠି ନଦେଖି ମଧ୍ୟ ଉଡ଼ା କଥାରେ ଅନୁଗୋଳର ତହସିଲଦାର ତୁମ୍ବିତୁଫାନ ସୃଷ୍ଟି କରିଦେଲେ । ଫଳରେ ରାଜାଙ୍କ ଦର୍ଶନ ନିଷିଦ୍ଧ ହୋଇଗଲା ।

ତା. ୨.୬.୧୮୫୩ ରେ ଏହି ମହାନ ସଂଗ୍ରାମୀଙ୍କର ଜୀବନ ଦୀପ ଲିଭିଗଲା । ଅନୁଗୋଳ ରାଜପଦବୀ ଉଚ୍ଛେଦ ଓ ଅନୁଗୋଳ ପ୍ରଜାଙ୍କୁ ଅକଥନୀୟ ନିର୍ଯ୍ୟାତନା ଦେଇ ଇଂରେଜ ସାମ୍ରାଜ୍ୟବାଦ ପ୍ରତିରୋଧ ଭାବନାକୁ ହତ୍ୟାକରାଗଲା ।

ଇଏଥିଲା ଇଂରେଜ ସାମ୍ରାଜ୍ୟବାଦ ବିରୁଦ୍ଧରେ ଅନୁଗୋଳର ପ୍ରଥମ ସଂଗ୍ରାମ ଓ ତାର କରୁଣ ପରିଣତି । ଅନ୍ୟ ରାଜା ମାନଙ୍କ ପ୍ରତି ଇଏ ଥିଲା ଏକ ଚେତାବନୀ ।

**ଦ୍ୱିତୀୟ ପର୍ଯ୍ୟାୟର ପ୍ରତିରୋଧ - ବିଂଶ ଶତାବ୍ଦୀ**

ରାଜା ସୋମନାଥ ସିଂହଙ୍କ ଅନ୍ତେ ଅନୁଗୋଳର ସମସ୍ତ ରାଜ ଭକ୍ତ ପ୍ରଜାମାନେ ଇଂରେଜ ଶାସନର ଉଦ୍ଦେଶ୍ୟ ମୂଳକ ଦମନ ଓ କୁଶାସନ ଫଳରେ ଶିକ୍ଷାଦୀକ୍ଷାରୁ ବଞ୍ଚିତ ହୋଇ ଧନ ଓ ମନରେ ହୀନବଳ ହୋଇଗଲେ । ମୁକ୍ତି ପାଇଁ ସାରା ଭାରତରେ ବିକ୍ଷିପ୍ତ ସଶସ୍ତ୍ର ସଂଗ୍ରାମ ଇଂରେଜକୁ ଚିନ୍ତାଗ୍ରସ୍ତ କଲା । ଏହାକୁ ପ୍ରତିହକତ କରିବାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ରଖି 'ହୋମ' ନାମକ ଜଣେ ଇଂରେଜ ବ୍ୟକ୍ତି ୧୮୮୫ରେ ବମ୍ବେରେ ଭାରତୀୟ ଜାତୀୟ କଂଗ୍ରେସ ବା Indian National Congress ଗଢ଼ି ସ୍ୱାଧୀନତା ସଂଗ୍ରାମ ଆରମ୍ଭ କଲେ । କଂଗ୍ରେସର କାର୍ଯ୍ୟକଳାପ ଇଂରେଜ କୁଶାସନ ବିରୁଦ୍ଧରେ ୩ଟା 'P'ରେ ସୀମିତ ରହିଲା । Protest ଓ Petetion Prayer - ପ୍ରତିବାଦ , ପତ୍ର ଲେଖା ଓ ପ୍ରାର୍ଥନା । ୧୮୮୯ରେ କଂଗ୍ରେସ କମିଟି ବୈଠକ ସିମଳାରେ ବସିଲା । ଅନୁଗୁଳ ବଡ଼କେରା ନିବାସୀ ପ୍ରଚଣ୍ଡ ପ୍ରତିଭାବାନ ରାଜ ପୁରୋହିତ ପଣ୍ଡିତ ଗତିକୃଷ୍ଣ ଦାଶ ମାତ୍ର ୨୩ବର୍ଷ ବୟସରେ ଏହି ସମ୍ମିଳନୀରେ ଯୋଗଦେଇ ବ୍ରିଟିଶ ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ ।

ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ୧୯୨୦ରେ 'ଅହିଂସ' ମୁକ୍ତି ସଂଗ୍ରାମ ଆରମ୍ଭ ହେଲା । ଅନୁଗୁଳରେ 'ମେରୀରାୟ' ଶାସନର କଟକରା ହେତୁ ଅନୁଗୁଳ ବାସୀ ସାମାନ୍ୟ ବିଳମ୍ବରେ ୧୯୩୦ଲବଣ ସତ୍ୟାଗ୍ରହରେ ଝାସ ଦେଲେ ।

ଲବଣ ସତ୍ୟାଗ୍ରହ : ୧୯୩୦ : ଲବଣ ସତ୍ୟାଗ୍ରହକୁ ପ୍ରତିହତ କରିବା ପାଇଁ ଅନୁଗୁଳ S.D.O. ମାଧବ ଚନ୍ଦ୍ର ମିଶ୍ର ଧମକ ଦେଲେ :

'ଲୁଣ ମାରିବାକୁ ଚାଲ
ପିଠି ହୁଏ ଗଲ ଗଲ' ।

ଏହାସତ୍ତ୍ୱେ ଅନୁଗୁଳରୁ ଚାରିଜଣ ସଂଗ୍ରାମୀ ଇଂଚୁଡ଼ିରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଲାଠି , ବୁଟ୍ ମାଡ଼ଖାଇ ଜେଲ୍ ଗଲେ । ଏମାନେ ହେଲେ - ଡ଼ାକ୍ତର ଚାକିରୀ ଛାଡ଼ି ଆଙ୍ଗୁଲାର ଡ଼ାଃ. କୃପାସିନ୍ଧୁ ଭୁକ୍ତା, ହାବିଲଦାର ଚାକିରି ଛାଡି ରାଇଙ୍ଘରଣର ଗୋପାଳ ଚନ୍ଦ୍ର ପ୍ରଧାନ , ହାଇସ୍କୁଲ ପାଠ ଛାଡ଼ି ଦୁଇପୁତ୍ର ବନ୍ଧୁ ବଡ଼କେରଜାଙ୍କର ଶ୍ରୀ ରତ୍ନାକର ନାୟକ ଓ ବାଗଡ଼ିଆର ଶ୍ରୀ ଆନନ୍ଦ ଚନ୍ଦ୍ର ପ୍ରଧାନ ।

ଗାନ୍ଧୀ - ଇରଉଇନ୍ ସନ୍ଧି ଫଳରେ ଲବଣ ସତ୍ୟାଗ୍ରହୀମାନେ କାରାମୁକ୍ତ ହେଲେ । ଗାନ୍ଧୀଙ୍କ

ପରାମର୍ଶରେ ସେବା, ସଂଗଠନ ଓ ସଂଗ୍ରାମରେ କର୍ମୀମାନେ ଲାଗିଲେ ।

**ଅନୁଗୁଳର କଂଗ୍ରେସ ମଂଚ : ୧୯୩୧**

କଂଗ୍ରେସ ସଂଗଠନ ନିମିତ୍ତ ଅନୁଗୁଳ ଆସିଲେ ଯଦୁମଣି ମଙ୍ଗରାଜ, ଗୋପବନ୍ଧୁ ଚୌଧୁରୀ ଓ ବାନର ସେନା ଅଦ୍ୱୈତ ବଲ୍ଲଭ ରାୟ । ସଭାକରିବାକୁ ଡ଼େପୁଟି କମିସନର ନିଷେଧ କରିଦେଲେ । ମଙ୍ଗରାଜେ ଡ଼େପୁଟି କମିସନରଙ୍କୁ ଭେଟି ଅନୁମତି ଲୋଡ଼ିଲେ-

"ଆଜ୍ଞା ବହୁତ ଲୋକ ଜମା ହୋଇଛନ୍ତି । ଆପଣଙ୍କ ନିଷେଧ ଆଦେଶଟା ସେମାନଙ୍କୁ ବୁଝେଇ ଦେବାକୁ ଅନୁମତି ମିଳୁ । ମଦନ ମୋହନ ଛକରେ ପ୍ରବଳ ଜନ ସମାଗମ । ଗୋଟେ ଶଗଡ଼ରୁ ବଳଦ ଫିଟେଇ ଲୋକେ ଟେକି ଧରିଲେ । ଇଏ ହେଲା ମଂଚ ।

**ମଂଗରାଜେ କହିଲେ :**

ଭାଇମାନେ ଗାନ୍ଧିଜୀ କହୁଛନ୍ତି ବ୍ରିଟିଶ ବେପାରୀ, ତମେ ଆମ ଦେଶ ଛାଡ଼ି ଚାଲି ଯାଅ, ନହିଲେ ଆମେ ତଡ଼ିଦେବୁ । ମାତ୍ର ଗାନ୍ଧୀ ତୁମକୁ ଏକଥା କହି ପାରିବେ ନାହିଁ । ଏଠିକା ସର୍କାର ତାଙ୍କ ତୁଣ୍ଡରେ ତାଲା ପକେଇ ଦେଲେ । ହଉ, ଆମେ କଂଗ୍ରେସ ମଂଜି ପୋତି ଦେଇ ଯାଉଛୁ । ଏହାକୁ ଗଛ କରିବା ଦାୟିତ୍ୱ ଅନୁଗୁଳ ଭାଇ ଭଉଣୀ ମାନଙ୍କର । ପାରିବତ ? "ହଇ ଆଜ୍ଞା ପାରିବୁ" ମହାତ୍ମା ଗାନ୍ଧିଜୀ ଜୟ, ଭାରତ ମାତା ଙ୍କୀ ଜୟ ଧ୍ୱନି ଦେଇ ଲୋକେ ଏ ଆହ୍ୱାନ ଗ୍ରହଣ କଲେ ।

**ଅନୁଗୁଳରେ ବୀଜ ବପନ , କୋଶଳାରେ ଅଙ୍କୁରୋଦ୍‌ଗମ :**

ମଙ୍ଗରାଜଙ୍କ ସଭାକୁ କୋଶଳା ଗ୍ରାମରୁ ପାଞ୍ଚଜଣ ପ୍ରତିନିଧି ଆସିଥିଲେ । ସର୍ବଶ୍ରୀ ଭଗବାନ ପ୍ରଧାନ, ସର୍ବେଶ୍ୱର ପ୍ରଧାନ, ଭଜମନ ପ୍ରଧାନ , ନୀଳ ଦାସ ଓ ନନ୍ଦୀ ବାରିକ, ରାତିରେ କୋଶଳାରେ ସଭାହେଲା, କୋଶଳା କଂଗ୍ରେସ ସ୍ୱେଚ୍ଛାସେବୀ ବାହିନୀ ଓ ବାନର ସେନା ଗଠିତ ହେଲା । ଇଏ ହେଲା ଅନୁଗୁଳ ଜିଲ୍ଲାର ପ୍ରଥମ କଂଗ୍ରେସ ସଂଗଠନ ତଥା ସ୍ୱାଧୀନତା ସଂଗ୍ରାମ ଅନୁଷ୍ଠାନ । ଅନ୍ତର୍ଯ୍ୟାମୀ ପ୍ରଧାନ, ରସାନନ୍ଦ ପ୍ରଧାନଙ୍କ ପରି ୧୫/୧୬ଜଣ ତରୁଣ ଏଥିରେ ଯୋଗଦେଲେ । ୧୯୩୧ । ସରକାରୀ ପ୍ରତିବନ୍ଧକ ହେତୁ ଅନୁଗୁଳ ଜିଲ୍ଲା କଂଗ୍ରେସ ଗଠିତ ହୋଇ ପାରିଲା ନାହିଁ । ତଥାପି ଅନୁଗୁଳର କର୍ମୀମାନେ କଟକ ଜିଲ୍ଲା କଂଗ୍ରେସରେ ସାମିଲ ହୋଇ କଟକ ଓ ଅନୁଗୁଳ ଜିଲ୍ଲାରେ ସେବା, ସଂଗଠନ ଓ ସଂଗ୍ରାମ ଗଲେ । ୧୯୩୬ରେ ଅନୁଗୁଳ ବଜାରରେ ପୁରୁଣାଗଡ଼ ନିବାସୀ ବିଦ୍ୟାଧର ମୁକ୍ତ୍ୟାରଙ୍କ ଠାରୁ ବାର ଡ଼େସିମିଲି ଜାଗା ଅଶୀ ଟଙ୍କାରେ କଟକ ଜିଲ୍ଲା କଂଗ୍ରେସ ସଭାପତି ପ୍ରାଣକୃଷ୍ଣ ପଡ଼ିଆରୀଙ୍କ ନାମରେ କିଣିଲେ । ପାଞ୍ଚବଖରା ଚାଳଘର କରି ଅନୁଗୁଳ ଜିଲ୍ଲା କଂଗ୍ରେସ ଆଶ୍ରମ ପ୍ରତିଷ୍ଠା କଲେ । କର୍ମୀମାନେ ରଚନାତ୍ମକ କାମ ସହ ବିପ୍ଳବର ବାର୍ତ୍ତା ପ୍ରଚାର କଲେ । କୁଶାସନର ପ୍ରତିବାଦ , ଅସହଯୋଗ , ବିଦେଶୀ ବସ୍ତ୍ର ପୋଡ଼ି, ବିଦେଶୀ ବସ୍ତ୍ର ଦୂକାନ ତଥା ଅବକାରୀ ଦୂକାନ ଆଗରେ ପିକେଟିଂ ସ୍ୱଦେଶୀ ଆଗ୍ରହ, ବିଦେଶୀ ବର୍ଜନ , ଖାଦ୍ୟ କୁଟୀର ଶିଳ୍ପ ପ୍ରସାର, ଅଶିକ୍ଷା, କୁସଂସ୍କାର ଦୂରୀକରଣ ଆଦି ଆନ୍ଦୋଳନ କଲେ । ଲାଠି ବୁଟ୍ ମାଡ଼ , ଜେଲ, ଜରିମନା ସହିଲ । ବନ୍ଧୁ ପରିବାର ନିର୍ଯ୍ୟାତିତ ହେଲେ । ଗ୍ରାମବାସୀ ତଥା ଆଶ୍ରୟ ଦାତାମାନେ ଅତ୍ୟାଚାରିତ ହେଲେ । କୋଶଳା , ଚୁକୁଡ଼ା, ଓ ପରା ଗ୍ରାମବାସୀଙ୍କ ଉପରେ ଲାଠି ଚାର୍ଜ ହେଲା । ଚୁକୁଡ଼ାର ମାଗତା ସେଠୀ , ପ୍ରାଣବନ୍ଧୁ ପ୍ରଧାନ , ଅଜୋତିସୋହୁ, ମାଡ଼ଖାଇ ଥାନାରେ

ଢୁକିଲେ। ଅପରାଧ ? ସଂଗ୍ରାମୀ ମାନଙ୍କୁ ଆଶ୍ରୟଦାନ।

**ଅନୁଗୁଳ ଜେଲରେ ସୁରେନ୍ଦ୍ର ଦ୍ୱିବେଦୀ - ୧୯୩୧**

**(ତା.୨୬/୦୭/୧୯୯୫ ରେ ଅନୁଗୁଳ ବାଳି ଛାତ୍ରାବାସରେ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଭାଷଣର ଅଂଶ)**

୧୯୩୧ ଗାନ୍ଧୀ-ଇରଉଇନ୍ ଚୁକ୍ତି ବଳରେ ଲବଣ ସତ୍ୟାଗ୍ରହୀମାନେ ଜେଲରୁ ଖଲାସ ହୋଇଥାନ୍ତି । ଗଠନ ମୂଳକ କାମ ଆରମ୍ଭ ହୋଇଥାଏ। ଅନୁଗୁଳ କଂଗ୍ରେସ କମିଟିର ଆୟବ୍ୟୟ ହିସାବ ଦେଖିବାକୁ ମୁଁ ଅନୁଗୁଳ ଆସିଥାଏ । ଦେଖିଲି ଏଠିକା ଲୋକଙ୍କର ମୌଳିକ ଅଧିକାରନାହିଁ । ଡ଼େପୁଟି କମିସନରଙ୍କୁ ବିନାନୁମତିରେ କେହି ନିଜଘରେ ଅତିଥି ରଖିବା ଅପରାଧ, ଖବର କାଗଜ ପଢ଼ିବା ମନା, ପ୍ରତିବାଦରେ ଏଠିକା କଂଗ୍ରେସ କର୍ମୀମାନେ 'ସମାଜ' ଆଣି ଡ଼ାକି ଡ଼ାକି ବିକନ୍ତି - ମୁଖ୍ୟତଃ ଆନନ୍ଦ ଚନ୍ଦ୍ର ସାହୁ (କୋଶଳା) ପୋଲିସ କାଗଜ ପୋଡ଼ି ଦିଏ । ଏମାନଙ୍କୁ ହାଜତରେ ଭରିଦିଏ । ସଂନ୍ଧ୍ୟାରେ ଛାଡ଼ି ଦିଏ । ଇମିତି ପ୍ରତିଦିନ ଚାଲେ। ବୁଢ଼ୀଠାକୁରାଣୀ ପାହାଡ଼ରେ ପତ୍ରକୁଡ଼ିଆଟିଏ କରି ଏମାନେ ଥାଆନ୍ତି। ଅନୁଗୁଳ ଛାଡ଼ି ଚାଲି ଯିବାକୁ Tresspass Act ରେ ଏମାନଙ୍କୁ ନୋଟିସ୍ ହୋଇଥାଏ। ଆମେ ସେଇ ପତ୍ର କୁଡ଼ିଆରେ ପତ୍ର ପକେଇ ଭାତ ଖାଉଥାଉ। ପୁଲିସ ଖାଇବା ପତ୍ରରୁ ଟାଣି ନେଇ ଆମକୁ ଗିରଫ କଲା। ଆମକୁ ଜାମିନ ନବ କିଏ ? ଅନୁଗୁଳର କର୍ମୀମାନେ ଜାମିନରେ ଯିବାକୁ ବା ମକଦମା ଲଢ଼ିବାକୁ ଚାହୁଁ ନଥାନ୍ତି। ମୋର ଫେରିବାର ଥାଏ। କଟକ ଖାନ୍ ନଗରରୁ ଆସିଏଠି ବ୍ୟବସାୟ କରୁଥିବା ବିଶ୍ୱନାଥ ସାହୁ ମୋତେ ଜାମିନ୍ ନେଲେ, ଅନ୍ୟମାନଙ୍କୁ ଗିରିଜା ଭୂଷଣ ଦତ୍ତ । କଟକରୁ ସତ୍ୟ ନାରାୟଣ ସେନଗୁପ୍ତ ଓ ନିତ୍ୟାନନ୍ଦ କାନୁନ୍‌ଗୋ ଆସି ଆମ କେଶ୍ ଲଢ଼ିଲେ। ବିଚାର ପ୍ରହସନ ଚାଲିଲା । ମୋ ଉପରେ Tresspass ନୋଟିସ୍ ହୋଇ ନଥିବାରୁ ଚାରି ଦିନ ପରେ ମୁଁ ଜେଲରୁ ଖଲାସ ହେଲି। ଅନ୍ୟମାନଙ୍କୁ ୬ମାସ ଜେଲ ହେଲା। ଗଣ୍ଡଗୋଳ ଆଶଙ୍କାରେ ଏମାନଙ୍କୁ କଟକ ଓ ପରେ ପାଟଣା କ୍ୟାମ୍ପ ଜେଲକୁ ପଠେଇ ଦିଆଗଲା। ଅନ୍ୟକର୍ମୀମାନ ଗିରିଜା ଭୂଷଣ ଦତ୍ତଙ୍କ ବଜାର ଘରେ ଗୋପ୍ୟରହି ଆନ୍ଦୋଳନ କରୁଥାନ୍ତି। ନାଗରମଲ୍ଲ ମୋଦୀଙ୍କ ନେତୃତ୍ୱରେ ମାରବାଡ଼ୀ ଯୁବକ ମାନେ ଏମାନଙ୍କ ଖାଦ୍ୟପେୟ ସେବାଯତ୍ନ କରୁଥାନ୍ତି। ଦିନେ ପୁଲିସ ସନ୍ଦେହ ହେତୁ ଏମାନେ ଖାଦ୍ୟପେୟ ପଠେଇ ପାରିଲେ ନାହିଁ। ସଂଗ୍ରାମୀ ମାନେ ବିଳମ୍ବିତ ରାତିରେ ଅନ୍ଧାରରେ ବିଲମାଳ ଭିତରେ ଯାଇ ଜରାସିଂହାର ବାମଦେବ ପ୍ରଧାନଙ୍କ ଘରେ ପହଞ୍ଚିଲେ। ସେବା ସତ୍କାର ସାହାଯ୍ୟ ପାଇ ରାତି ଭିତରେ ଗୁପ୍ତ କେନ୍ଦ୍ରକୁ ଫେରିଆସିଲେ। କର୍ମୀମାନେ ପାଟଣା କ୍ୟାମ୍ପ ଜେଲରୁ ଖଲାସ ହୋଇ ଗାଁକୁ ଫେରିଲେ। ପୁଲିସ ଏମାନଙ୍କ ପିଛା ଧରିଥାଏ। ସୁରେନ୍ଦ୍ର ନାଥ ଦ୍ୱିବେଦୀ ଛଦ୍ମବେଶରେ କୋଶଳା ଆସିଲେ। କେତେଜଣ କର୍ମୀଙ୍କ ସହ ରାତ୍ରିର ଅନ୍ଧକାର ମଧ୍ୟରେ ହିଂସ୍ରଜନ୍ତୁ ଭରା ବଣ ପାରହୋଇ ତାଳଚେର ଷ୍ଟେସନରେ ଟ୍ରେନ୍ ଧରି ପହଞ୍ଚିଲେ କଟକରେ । କର୍ମୀମାନେ ସ୍ୱରାଜ ଆଶ୍ରମ ଓ ଜୈନମନ୍ଦିରରେ ରହି କଟକରେ ଆନ୍ଦୋଳନ କଲେ।

**ମେଳଣରେ ମେଛି : ୧୯୩୨ :**

୧୯୩୨ ଫଗୁଣ। କୋଶଳା ଫଗୁଣ ମେଳାରେ ହଜାର ହଜାର ଲୋକଙ୍କ ସମାଗମ । ପ୍ରସାଦ ସେବନ ପରେ ହଠାତ୍ ଆକାଶରେ ଉଡ଼ିଲା ତ୍ରିରଙ୍ଗା ପତାକା।

ଇନ୍‌କିଲାବ୍ - ଜିନ୍ଦାବାଦ୍, ବ୍ରିଟିଶ ସର୍କାର ମୁର୍ଦ୍ଦାବାଦ୍, ଭାରତ ମାତା କୀ ଜୟ, ଧ୍ୱନିରେ ଚାଲିଲା ଲାଠି, ବୁଟ୍ ମାଡ଼, ବ୍ୟାପକ ଗିରଫଦାରି। ବିଶ୍ୱେଶ୍ୱର ପ୍ରଧାନ ଛଦ୍ମବେଶରେ କଟକରୁ ଆଣିଥିବା ନିଷିଦ୍ଧ ପ୍ରଚାରପତ୍ର ବଣ୍ଟାଚାଲିଥାଏ । ଗିରଫ ହୋଇ ଜେଲଗଲେ ବିଶ୍ୱେଶ୍ୱର ପ୍ରଧାନ, ରସାନନ୍ଦ ପ୍ରଧାନ (କୋଶଳା), ହୃଷିକେଶ ତ୍ରିପାଠୀ (ବେନ୍ତପୁର), ମହେଶ୍ୱର ପ୍ରଧାନ (ସନ୍ତରାବନ୍ଧ), ନାରାୟଣ ଗଡ଼ନାୟକ(ପୋଡ଼ାପଡ଼ା), ବଳରାମ ଦେହୁରୀ (ମାଛକୁଟା), ସର୍ବେଶ୍ୱର ପ୍ରଧାନ, ଆନନ୍ଦ ଚନ୍ଦ୍ର ସାହୁ, ଗଣେଶ୍ୱର ସାହୁ ଆଦି (କୋଶଳା) । ଲାଠି ମାଡ଼ରେ ହୃଷିକେଶ ତ୍ରିପାଠୀଙ୍କ ଛାମୁଦାନ୍ତ ଭାଙ୍ଗି ପ୍ରବଳ ରକ୍ତ ସ୍ରାବ ହେଲା ।

**ଯାତ୍ରାରେ ବିଦ୍ରୋହ : ୧୯୩୨** କୋଶଳା ଭ୍ରାଦ୍ରବ ଯାତ୍ରା ବା ପ୍ରସିଦ୍ଧ ରାମଚଣ୍ଡୀ ଯାତ୍ରା । ରାଜ୍ୟ ଓ ରାଜ୍ୟ ବାହାରୁ ହଜାର ହଜାର ଭକ୍ତ ଦର୍ଶକ ବ୍ୟବସାୟୀଙ୍କ ସମାଗମ । ହଠାତ୍ କର୍ମୀମାନେ ତ୍ରିରଙ୍ଗା ପତାକା ଉଡ଼େଇଲେ । କଂଗ୍ରେସ ପ୍ରଚାର ପତ୍ରମାନ ବାଣ୍ଟି ନାନା ଧ୍ୱନି ଦେଲେ । ଚାଲିଲା ଲାଠି, ବୁଟ୍ ମାଡ଼, ଗିରଫଦାରି, ସମସ୍ତ କର୍ମୀ ଗିରଫ ହୋଇ ଜେଲ୍‌ଗଲେ ।

**ଗାନ୍ଧିଜୀଙ୍କ ହରିଜନ ପଦଯାତ୍ରା : ୧୯୩୪ :**

ହରିଜନ ପଦଯାତ୍ରାରେ ଗାନ୍ଧୀ ୧୯୩୪ ମେ ମାସ ୬ତାରିଖ ରବିବାର ବାମୁରରୁ ଆସି ଅନୁଗୁଳର ପଶ୍ଚିମ ପ୍ରବେଶପଥ ଲିଙ୍ଗରାନଦୀ ପୋଲ ପାଖରେ ପହଞ୍ଚିଲେ । ତା ପୂର୍ବରୁ ଅନୁଗୁଳର ବଡ଼କେରା ଛକରେ ସମବେତ ଜନତାକୁ ସମ୍ବୋଧନ କରିଥିଲେ । ଏଠି ତାଙ୍କ ଅଭ୍ୟର୍ଥନା ଆୟୋଜନ କରିଥିଲେ ବଡ଼କେରା ନିବାସୀ ପଣ୍ଡିତ ଗତିକୃଷ୍ଣ ଦାଶ ।

ଡେପୁଟି କମିସନରଙ୍କ ନିଷେଦ୍ଧ ହେତୁ ଗାନ୍ଧୀ ଅନୁଗୁଳ ସହର ଭିତରେ ପ୍ରବେଶ କରିପାରିଲେ ନାହିଁ । ଟାଉନ ବାହାର ଗୋଲେଇ ରାସ୍ତା (ଆଜିର ଗାନ୍ଧି ମାର୍ଗ) ରେ ଆସି ଗାର୍ଲସ୍ ସ୍କୁଲ ସାମନା ଦେଇ ରାଣୀଗୋଡ଼ା ତୋଟାରେ ବିଶ୍ରାମ ନେଲେ । ଆଜିର ପାଞ୍ଚଛକିଆ ତୁରଙ୍ଗ ଜଂଗଲ ମୌଜା) । ସେଦିନ ରବିବାର ସତ୍ତ୍ୱେ ସମସ୍ତ ସ୍କୁଲ କଚେରି ଆଦି ଖୋଲା ରଖାଯାଇଥାଏ । ଗାନ୍ଧୀ ଙ୍କ ସଭାବର୍ଜନ କରିବାକୁ ପ୍ରତିଗାଁରେ ପ୍ରଚାର କରାଯାଇଥାଏ । ଫଳ ଓଲଟା ହେଲା । ଗାନ୍ଧୀଦର୍ଶନ କରିବାକୁ ହଜାର ହଜାର ଆବାଳ ବୃଦ୍ଧ ବନିତା ଦିନକ ପୂର୍ବରୁ ଅନୁଗୁଳରେ ହାଜର ହୋଇଗଲେ । ଗାନ୍ଧୀଙ୍କୁ ଦର୍ଶନ କଲେ । ତାଙ୍କଠୁଁ ଶୁଣିଲେ । ହରିଜନ ପାଣ୍ଠିକୁ ମୁକ୍ତ ହସ୍ତରେ ଦାନ କଲେ ।

**ଗଡ଼ଜାତ ପ୍ରଜା ଆନ୍ଦୋଳନ - ହିଜରାତ ଓ ଅନୁଗୁଳ - ୧୯୩୮ :**

ତାଳଚେର ଓ ଢେଙ୍କାନାଳରେ ରାଜ ଅତ୍ୟାଚାର ହେଲା ଅତି ଅମାନୁଷିକ । ତା.୨୧.୯.୧୯୩୮ରେ ଚନ୍ଦ୍ରବିଲ ଗାଁରେ ପୁଲିସ ଟ୍ରକକୁ ନଈବାଲିରେ ପ୍ରଜାଏ ନଠେଲିବାରୁ ହେଲା ଲାଠିମାଡ଼, ଗୁଳିଚାଳନା, ବିକା ନାଏକ ଶହୀଦ ହେଲେ । ଝିଅବୋହୂଙ୍କ ଉପରେ ଅତ୍ୟାଚାର , ଲୁଣ୍ଠନ ଘରପୋଡ଼ି । ଭୟଭୀତ ପ୍ରଜା ଭିଟାମାଟି ଛାଡ଼ି ପଳେଇ ଆସିଲେ କୋଶଳା । ହେଡ଼ପଣ୍ଡିତ କବି କଲ୍ୟାଣ ସାହୁ ସ୍କୁଲ ଛୁଟିକରି ପ୍ରଜାମାନଙ୍କୁ ଆଶ୍ରୟ ଦେଲେ । ଶିକ୍ଷକ , ଛାତ୍ର , ଗ୍ରାମବାସୀ ଶରଣାର୍ଥୀଙ୍କ ସେବାରେ ଲାଗିଲେ ।

ତାଳଚେର ହାଟତୋଟାରେ ହଜାର ହଜାର ପ୍ରଜାଙ୍କ ସମାବେଶ । ଭୟଭୀତ ରାଜା ଆକାଶ ମାର୍ଗରୁ ଗୁଳିବର୍ଷଣ କଲେ । ଅତ୍ୟାଚାର ଅସହ୍ୟ ହେଲା ।

ମହାତ୍ମାଗାନ୍ଧୀଙ୍କ ଆହ୍ୱାନ କ୍ରମେ ତାଳଚେର ଓ ଢ଼େଙ୍କାନାଳବାସୀ 'ହିଜରାତ୍' ତଳେ ତା.୮.୧୧.୧୯୩୮ରେ ଅର୍ଥାତ ତାଳଚେରର ପ୍ରାୟ ୪୦ହଜାର ଓ ଢ଼େଙ୍କାନାଳର ୨୦ହଜାର ପ୍ରଜା ରାଜ ଅତ୍ୟାଚାର ବିରୁଦ୍ଧରେ ପ୍ରତିବାଦ କରି ଭିଟାମାଟି ଛାଡ଼ି ଅନୁଗୁଳରେ ଆଶ୍ରୟ ନେଲେ। ତାଳଚେର ବାସୀ କୋଶଳା, କଙ୍କସଲା, ଆମ୍ବପାଳ-ନତଡ଼ା, ପାଣିଓଲା ଓ ମଣ୍ଡୁଆ ଆଶ୍ରୟ ଶିବିର ମାନଙ୍କରେ ଢ଼େଙ୍କାନାଳ ବାସୀ ବୁଢ଼ାପଙ୍କ ଓ ଆଖପାଖ ଗାଁରେ ବର୍ଷାଧିକ କାଳ ଆଶ୍ରୟ ନେଲେ। ପତ୍ରକୁଡ଼ିଆରେ । ଅନୁଗୁଳ ବାସୀ ସେବା ସତ୍କାର କଲେ। ମହାତ୍ମାଗାନ୍ଧୀଙ୍କ ଆହ୍ୱାନ କ୍ରମେ ସାରା ଭାରତରୁ ସାହାଯ୍ୟ ଆସିଲା। ବ୍ରିଟିଶ ପାର୍ଲାମେଣ୍ଟ କମ୍ପିଲା । ବିରୋଧି ଦଳ M.P. ମିସ୍ ଆଗାଥା ହାରିସନ୍ କୋଶଳା କ୍ୟାମ୍ପ ଓ ତାଳଚେର ଜେଲ ପରିଦର୍ଶନ କଲେ।

**ବ୍ୟକ୍ତି ସତ୍ୟାଗ୍ରହ : ୧୯୪୦ :**

୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା। ଭାରତ ବାସୀଙ୍କ ଇଚ୍ଛା ବିରୁଦ୍ଧରେ ଇଂରେଜ ତା ସପକ୍ଷରେ ଲଢ଼ିବାକୁ ଭାରତକୁ ଯୁଦ୍ଧକୁ ଟାଣିନେଲା। ବ୍ୟକ୍ତିଗତ ଧନ ସମ୍ପତ୍ତି, ହାତୀ ଘୋଡ଼ା ଗଧ ଓଟ ଗାଡ଼ିମଟର ଆଦି ଟାଣିନେଲା ଯୁଦ୍ଧକୁ । ମହାତ୍ମାଗାନ୍ଧୀ ପ୍ରତିବାଦ କରି "ବ୍ୟକ୍ତି ସତ୍ୟାଗ୍ରହର" ଆହ୍ୱାନ ଦେଲେ ୧୯୪୦ରେ । ଗୋଟିଏ ସଭାରେ କେବଳ ଜଣେ ବ୍ୟକ୍ତି ପଦେକଥା କହି ପ୍ରତିବାଦ କରିବେ । "ଧନଜନ ଦେଇ ଏ ଯୁଦ୍ଧକୁ ସାହାଯ୍ୟ କରିବା ମହାପାପ" । ଅନୁଗୁଳର ବାଗଡ଼ିଆରେ ପ୍ରଥମେ ନବକୃଷ୍ଣ ଚୌଧୁରୀ ବ୍ୟକ୍ତି ସତ୍ୟାଗ୍ରହ କରି ଜେଲ ଗଲେ । କୋଶଳରେ ଲୋକନାଥ ପ୍ରଧାନ ଓ ଅନ୍ୟମାନେ ଅନ୍ୟତ୍ର । ପରାରେ ଭଗବାନ ବେହେରା । ଏଠି ପୁଲିସ ଝିଅବୋହୁଙ୍କୁ ଅନ୍ୟାୟରେ ଗିରଫ କଲା। ମାଳତୀଦେବୀ ଦିବାକର ପ୍ରଧାନଙ୍କ ସାଇକେଲ ପଛରେ ବସି ଧାଇଁରେ ପରା ଗ୍ରାମକୁ । ଝିଅବୋହୁ ଛାଡ଼ ପାଇଲେ।

ଏ ସତ୍ୟାଗ୍ରହରେ ଜେଲ ଗଲେ ନବକୃଷ୍ଣ ଚୌଧୁରୀ, ଲୋକନାଥ ପ୍ରଧାନ , ହୃଷିକେଶ ତ୍ରିପାଠୀ , ବଳଭଦ୍ର ମିଶ୍ର, ଭଗବାନ ବେହେରା , ଦିବାକର ମିଶ୍ର, ବୃନ୍ଦାବନ ସାହୁ, ଭାବଗ୍ରାହୀ ପ୍ରଧାନ, ରଘୁ ନନ୍ଦ , ବାଳକୃଷ୍ଣ ସେଠୀ, ଉଚ୍ଛବାନନ୍ଦ ପ୍ରଧାନ, ଧୋବେଇ ସାହୁ, ଆନନ୍ଦ ସାହୁ, ଗଣେଶ୍ୱର ସାହୁ ଆଦି। ୧୯୪୧ରେ ବ୍ୟକ୍ତି ସତ୍ୟାଗ୍ରହ ବନ୍ଦ ହେଲା ଓ ସଂଗ୍ରାମୀ ମାନେ ମୁକ୍ତ ହେଲେ।

**ଅନ୍ତିମ ସଂଗ୍ରାମ : ଭାରତ ଛାଡ଼-୧୯୪୨**

ବ୍ରିଟିଶ ଶାସନପ୍ରତି ଗାନ୍ଧୀଙ୍କର ଆଉ ସାମାନ୍ୟତମ ଆସ୍ଥା ବା ସମ୍ମାନ ରହିଲା ନାହିଁ। ଗାନ୍ଧିଜୀ ଦେଶବାସୀଙ୍କୁ ମୀମାଂସକ ସଂଗ୍ରାମ ଓ ଚରମ ତ୍ୟାଗ ପାଇଁ ଆହ୍ୱାନ ଦେଲେ। ୧୯୪୨ଅଗଷ୍ଟ ଆଠ ତାରିଖରେ ବମ୍ବେରେ କଂଗ୍ରେସ କମିଟି ବୈଠକ । ସର୍କାରଙ୍କୁ ଅନ୍ତିମ ନିର୍ଦ୍ଦେଶ - 'ଭାରତ ଛାଡ଼'**Quit India** ବା ଦେଶବାସୀଙ୍କୁ ଅନ୍ତିମ ଆହ୍ୱାନ- 'କର ବା ମର **"Do or Die"**। ଗାନ୍ଧୀ ପ୍ରଥମେ ବଡ଼ଲାଟଙ୍କୁ ସାକ୍ଷାତ ଆଲୋଚନା କରିବେ। ଆଲୋଚନା ବିଫଳ ହେଲେ ଏ ସଂଗ୍ରାମ ହେବ, କେବେ ଓ କିପରି ଭାବେ ସଂଗ୍ରାମ ହେବ ଗାନ୍ଧୀ ନିର୍ଦ୍ଦେଶ ଦେବେ। ଗାନ୍ଧୀ ଶୋଇବାକୁ ଗଲେ।

**ସର୍କାର ଛାନିଆଁ।** ବାଟଘାଟ ଯାହାକୁ ଯୋଉଠି ପାଇଲେ ନେତାମାନଙ୍କୁ ଗିରଫ କଲେ। ଶୋଇବାରୁ

ଉଠେଇ ଗାନ୍ଧୀଙ୍କୁ ଗିରଫ କଲେ । ଭାରତ ସ୍ତବ୍ଧ, ନେତାଶୂନ୍ୟ, ଜୟପ୍ରକାଶ, ଅରୁଣା ଆସଫ ଅଲ୍ଲୀ, ସୁରେନ୍ଦ୍ର ଦ୍ୱିବେଦୀ ଆଦି ଆତ୍ମଗୋପନ କରି ଆନ୍ଦୋଳନ ପରିଚାଳନା କଲେ ।

କୋଶଳାର ପ୍ରସିଦ୍ଧ ରାମଚଣ୍ଡୀ ଯାତ୍ରା ତା.୨୭.୮.୧୮୪୨ ।ରାଜ୍ୟ,ରାଜ୍ୟ ବାହାରର ୫୦/୬୦ହଜାର ଭକ୍ତ, ଦର୍ଶକ, ବ୍ୟବସାୟୀଙ୍କ ସମାଗମ , ଦିବାକର ମିଶ୍ର ତ୍ରିରଙ୍ଗା ପତାକା ଉଡ଼େଇ ମଂଚ ଉପରକୁ ଚଢ଼ି ଓଜସ୍ୱିନୀ ଭାଷାରେ ଅଗ୍ନିବର୍ଷଣ କଲେ । ଗିରଫ ହେଲେ । ପରେ ପରେ ଅନ୍ୟମାନେ । ଉତ୍ୟକ୍ତ ଜନତା ଟେକା ମାଡ଼ କରି ପୁଲିସ ହାତରୁ ସଂଗ୍ରାମୀ ମାନଙ୍କୁ ଛଡ଼େଇ ଆଣିଲେ । ଫରେଷ୍ଟ ବିଟ୍‌ଘର ପୋଡ଼ିଦେଲେ । ପୋଲିସ ଛତ୍ରଭଙ୍ଗ ଦେଲା । ପୁଲିସ ଅତ୍ୟାଚାର ଆଶଙ୍କାରେ ଗ୍ରାମବାସୀ ରାତାରାତି ଗାଁଛାଡ଼ି ବଣ ଜଙ୍ଗଲ ଆଖପାଖ ଗାଁକୁ ପଳେଇଗଲେ । ବର୍ଷଣ ମୁଖର ଭାଦ୍ରବ ମାସ, କଣ୍ଟା ଝଟା , ହିଂସ୍ରଜନ୍ତୁ, ସାପ ବିଛା, ନଇନାଳ ଭରା ଜଙ୍ଗଲ ପୁଲିସ୍ ଆଉ ଫଉଜ ପହଞ୍ଚି ନାରକୀୟ ଲୀଳା ଆରମ୍ଭ କରିଦେଲା । ଯେଉଁମାନେ ରହିଯାଇଥିଲେ ସେମାନେ ପୁଲିସ ଅତ୍ୟାଚାରର ଶିକାର ହେଲେ ।

କୋଶଳା ସ୍କୁଲରେ ଏକ ଅସ୍ଥାୟୀ ଥାନା ହେଲା । ଫଉଜ ଫ୍ଲାଗମାର୍ଚ୍ଚ କଲା । ପ୍ରତିବାଦରେ କେହି ଜଣେ ସ୍କୁଲଘର ପୋଡ଼ିଦେଲା । ବସିଲା ଗାଁରେ ପିଟୁଣି ଟିକସ, ବଢ଼ିଲା ଅତ୍ୟାଚାର । ଗ୍ରାମବାସୀଙ୍କୁ ରକ୍ଷା କରିବାକୁ ଗଣେଶ୍ୱର ସାହୁ, ପି. ମଙ୍ଗୁଲୁ , ମୁଁ ପୋଡ଼ିଛି କହି ଆତ୍ମସମର୍ପଣ କରି ଗରିଫ ହେଲେ । ପରେ ପ୍ରମାଣ ଅଭାବରୁ ନିର୍ଦ୍ଦୋଷ ସାବ୍ୟସ୍ତ ହେଲେ ମଧ୍ୟ ଭାରତ ରକ୍ଷା ଆଇନ୍ ବଳରେ ଜେଲ ଗଲେ । ବହୁ ପ୍ରବୋଧନାପରେ ୭/୮ଦିନ ପରେ ଗ୍ରାମ ବାସୀ ଘରକୁ ଫେରିଲେ । ସଂଗ୍ରାମୀମାନେ ୧୦ରୁ ୧୬ବର୍ଷ ପର୍ଯ୍ୟନ୍ତ ଜେଲଦଣ୍ଡ ଭୋଗିଲେ । ଘର ଦ୍ୱାର ଚାଷବାସ ଉଜୁଡ଼ିଲା । ଘର ସମ୍ପତ୍ତି କୋରଖ, ବାପ ମା ପରିବାର ବନ୍ଧୁଜନ ନାନା ମତେ ଅତ୍ୟାଚାରିତ ହେଲେ । ୧୯୪୬ରେ ଭାରତ ସ୍ୱାଧୀନ ହେବ ବୋଲି ଘୋଷଣା ହେବା ପରେ ସଂଗ୍ରାମୀ ମାନେ କାରାମୁକ୍ତ ହେଲେ । ଏହିପରି ଭାବେ ଇଂରେଜ ସାମ୍ରାଜ୍ୟବାଦର ପ୍ରତିରୋଧ କରି ସମଗ୍ର ଅନୁଗୁଳ ନିର୍ଯ୍ୟାତିତ ହୋଇଥିଲା ।

ବି.ଦ୍ର: ତା.୨୩.୨.୨୦୦୮ ରେ ଅନୁଗୁଳ ସ୍ୱୟଂଶାସିତ ସରକାରୀ ମହାବିଦ୍ୟାଳୟରେ U.G.C ଆନୁକୂଲ୍ୟରେ ଆୟୋଜିତ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଥିଲା ।

# ରାଜକବି ସୋମନାଥ ସିଂହଙ୍କ ସାହିତ୍ୟିକ ପ୍ରତିଭା ଓ ଅନୁଗୋଳ ଅସ୍ମିତା

ଶ୍ରୀ ଧରଣୀ ଧର ନାଥ,
ଯୁଗ୍ମଶାସନ ସଚିବ, ଜଳସଂପଦ ବିଭାଗ, ଓଡ଼ିଶା

ଓଡ଼ିଆ ଜାତୀୟତାବାଦ ବା Oriya Nationalism ପରିବର୍ତ୍ତେ ଓଡ଼ିଆ ଅସ୍ମିତା ବା Oriya Identity ପରି ପରିଭାଷା ବ୍ୟବହାର କରାଯାଉଛି। ଏହାର କାରଣ ହେଉଛି ଓଡ଼ିଆ ଜାତି ଏକ ପାରଂପାରିକ ଗୋଷ୍ଠୀ ନୁହେଁ, ଏହା ଆଧୁନିକ କାଳରେ ଏକ ପରିକଳ୍ପିତ ଗୋଷ୍ଠୀ। ସମସ୍ତପ୍ରକାର ଗୋଷ୍ଠୀ ପାରଂପାରିକ ଗୋଷ୍ଠୀ ବା ପରିକଳ୍ପିତ ଗୋଷ୍ଠୀ ପ୍ରସଙ୍ଗରେ ବା Identity ଅସ୍ମିତା ପରିଭାଷାରେ ବ୍ୟବହାର କରାଯାଉଛି। ଯେପରି ପାରିବାରିକ ଅସ୍ମିତା, ଖଣ୍ଡାୟତ-ଅସ୍ମିତା, ଅନୁଗୋଳ -ଅସ୍ମିତା ଇତ୍ୟାଦି। କିନ୍ତୁ ଓଡ଼ିଶା କେନ୍ଦ୍ରିକ ଗୋଷ୍ଠୀ ଓ ଓଡ଼ିଆ ଭାଷା - କୈନ୍ଦ୍ରିକ ଗୋଷ୍ଠୀ ଏକ ନୁହେଁ। ଓଡ଼ିଆ-ଭାଷା କେନ୍ଦ୍ରିକ ଗୋଷ୍ଠୀର ଜାତିତ୍ୱ ଅଛି। ଓଡ଼ିଶା କେନ୍ଦ୍ରିକ ଗୋଷ୍ଠୀର ଜାତିତ୍ୱ ନାହିଁ। ଏହା ଭାରତ ୟୁନିୟନର ଏକ ରାଜ୍ୟ। ଏକ ରାଜନୀତିକ ଅଂଶ। ତେଣୁ ଓଡ଼ିଶା କେନ୍ଦ୍ରିକ ଗୋଷ୍ଠୀଟି ଗୋଟିଏ ଜାତି ହୋଇଥିବାରୁ ସେ ପ୍ରସଙ୍ଗରେ ଅସ୍ମିତା ପରିବର୍ତ୍ତେ ଜାତୀୟତାବାଦପରିଭାଷା ସ୍ପୃହଣୀୟ। ଓଡ଼ିଆ ଜାତୀୟତାବାଦ ଓଡ଼ିଆ ଅସ୍ମିତା ଏକପରି ମନେହେଉଥିଲେ ମଧ୍ୟ ପ୍ରକୃତରେ ଏକା ନୁହେଁ। ଅନୁଗୋଳ ଅସ୍ମିତା କଥା ଆଲୋଚନା କଲାବେଳେ ଜଣାଯାଏ ଯେ ଖ୍ରୀଷ୍ଟାବ୍ଦ ୯୫୦ରୁ ୧୮୪୮ମଧ୍ୟରେ ଅନୁଗୋଳ ନାମକ ଏକ ନୂତନ ଗଡ଼ଜାତ ମଣ୍ଡଳ ଓଡ୍ର ରାଷ୍ଟ୍ରମଣ୍ଡଳ ମାନଚିତ୍ରରେ ପ୍ରଥମଥର ପାଇଁ ସ୍ଥାନ ପାଇଥିଲା। ୯୫୦ଖ୍ରୀଷ୍ଟାବ୍ଦ ପୂର୍ବରୁ ଏହି ଭୂଖଣ୍ଡଟି ଆଦିବାସୀ ବହୁଳ କ୍ଷୁଦ୍ରକ୍ଷୁଦ୍ର ଜନପଦ ବା ମଣ୍ଡଳରେ ବିଭକ୍ତ ଥାଇ ଆଦିବାସୀ ମୁଖିଆ ବା ମଲ୍ଲିକ ବା ମୁଠାଦାର ମାନଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିଲା। ୯୫୦ଖ୍ରୀଷ୍ଟାବ୍ଦ ରେ କଦମ୍ବ ବଂଶର କ୍ଷତ୍ରୀୟମାନେ ଅନୁବଳ ବନ୍ତରା ନାମକ ଜଣେ କନ୍ଧ ମୁଖିଆକୁ ହତ୍ୟା କରି ତାର ଅଧିନରେ ଥିବା କ୍ଷୁଦ୍ର ଜନପଦକୁ ଦଖଲ କରି ନିଜର ଶାସନ ପ୍ରତିଷ୍ଠା କଲେ। ଅନୁଗୋଳ ପଥରଗନ ଅଞ୍ଚଳ ଅନୁବନ୍ଧର ନିବାସସ୍ଥଳୀ ଥିଲା। କଦମ୍ବ ବଂଶୀୟ କ୍ଷତ୍ରୀୟମାନେ ଆଧୁନିକ ଅନୁଗୋଳର ପୁରୁଣାଗଡ଼ଠାରେ ବସତି ସ୍ଥାପନ କରି ସେହିଠାରୁ ନିଜର ଶାସନ ପରିଚାଳନା କରୁଥିଲେ। ଏହାର ନାମକରଣ କରିଥିଲେ ଅନୁଗୋଳ ଗଡ଼। ଏପରି ଏକ ଅଞ୍ଚଳରେ ବିଭିନ୍ନ ସମୟରେ ରାଜୁତିକରୁଥିବା ରାଜାମାନଙ୍କ ବିବରଣୀ ନିମ୍ନରେ ପ୍ରଦାନ କରାଗଲା :

ଖ୍ରୀଷ୍ଟାବ୍ଦ : ୯୫୦ - ୧୧୮୦ କେନ। ଉପାଧିଧାରୀ ୯ଜଣ ରାଜା

୧୧୮୦-୧୩୮୦ମହାପାତ୍ର, ସାମନ୍ତ ସିଂହାର ଓ ଚମୂପତି ଉପାଧିଧାରୀ, ୯ଜଣ ରାଜା

୧୩୮୦-୧୬୧୧ଶ୍ରୀ ଚନ୍ଦନ ଉପାଧିଧାରୀ ୧୧ଜଣ ରାଜା

୧୬୧୧-୧୫୪୮ ସିଂହ , ଜଗଦେବ ଉପାଧିଧାରୀ ୧୩ଜଣ ରାଜା

**ଅନୁଗୋଳ ଅସ୍ମିତା ଓ ସୋମନାଥ ସିଂହ :**

ସୋମନାଥ ସିଂହ ସମ୍ଭବତଃ ୧୮୦୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ। ତାଙ୍କ ପିତା ଥିଲେ ଗୋପୀନାଥ

ସିଂହ ଏବଂ ମାତା ଥିଲେ ସୁଲୋଚନା । ୧୪ବର୍ଷ ବୟସରେ ସେ ଅନୁଗୋଳର ରାଜସିଂହାସନରେ ଅଧିଷ୍ଠିତ ହେଲେ । ବ୍ରିଟିଶ ସରକାର ମୋହନ ଚନ୍ଦ୍ର ଲାଲା ନାମକ ଜଣେ ଅଭିଜ୍ଞ ସରକାରୀ କର୍ମଚାରୀଙ୍କୁ ତାଙ୍କର ମ୍ୟାନେଜର ରୂପେ ଅନୁଗୋଳ ଠାରେ ଅବସ୍ଥାପିତ କରିଥିଲେ । ଶାସନ କାର୍ଯ୍ୟ ପରିଚାଳନା ପାଇଁ ସମଗ୍ର ରାଜ୍ୟକୁ ୧୦ଟି ପ୍ରଗଣାରେ ବିଭକ୍ତ କରିଥିଲେ । ଭୁବନଚନ୍ଦ୍ର ମଙ୍ଗରାଜ , ନୀଳକଣ୍ଠ ବିଧାର, ଜଗନ୍ନାଥ ସର୍ଦ୍ଦାର, ମୁକୁନ୍ଦ ହରିଚନ୍ଦନ ଆଦି ୨୦ରୁ ଊର୍ଦ୍ଧ୍ୱ ଦକ୍ଷ ରାଜକର୍ମଚାରୀ ରଖିଥିଲେ । ତାଙ୍କ ରାଜସଭାରେ ପାତ୍ର , ମନ୍ତ୍ରୀ, ପାଞ୍ଜିଆ ଛାମୁକମଣ , ବେବର୍ତ୍ତା, ରାଜଗୁରୁ ପ୍ରଭୃତି କର୍ମଚାରୀମାନେ ଆସନ ଅଳଂକୃତ କରୁଥିଲେ । ରାଜାଙ୍କ ପଣ୍ଡିତ ସଭାରେ ନୃସିଂହ ଲାଟ କବିଚନ୍ଦ୍ର ରାୟଗୁରୁ, କାମଦେବ ବ୍ରହ୍ମା, ମହାଦେବ ବ୍ରହ୍ମା, ଗଣେଶ୍ୱର ବ୍ରହ୍ମା, ଜଗନ୍ନାଥ ବଡ଼ପଣ୍ଡା, ଚନ୍ଦ୍ରପରମ ଗୁରୁ, ଜଗବଂନ୍ଧୁ ଗୀତ ପଣ୍ଡିତ, ନୀଳକଂଠ ପୁରୋହିତ , ସଦାଶିବ ମହାପାତ୍ର ଆଦି ସର୍ବଶ୍ରେଷ୍ଠ ପଣ୍ଡିତ ଥିଲେ ।

**ବୁଡ଼ାପଙ୍କ ଯୁଦ୍ଧ :**

ବୁଡ଼ାପଙ୍କ ଯୁଦ୍ଧ ସୋମନାଥଙ୍କ ଅନୁଗୋଳ ଅସ୍ମିତା ବଜାୟ ରଖିବା ପାଇଁ ଶ୍ରେଷ୍ଠ ପ୍ରୟାସ । ୧୮୨୫ଖ୍ରୀଷ୍ଟାବ୍ଦରେ ଏହି ଯୁଦ୍ଧ ଅନୁଗୋଳ ଓ ଢ଼େଙ୍କାନାଳ ରାଜ୍ୟ ମଧ୍ୟରେ ହୋଇଥିଲା । ସେହିସମୟକୁ ସୋମନାଥଙ୍କ ବୟସ ହୋଇଥିଲା ୨୫ ବର୍ଷ । ଢ଼େଙ୍କାନାଳ ରାଜାଙ୍କ ଆହ୍ୱାନକୁ ପ୍ରତିହତ କରିବାପାଇଁ ରାଜା ସୋମନାଥ ବିଷ୍ଣୁଚକ୍ର ଅଶ୍ୱରେ ଆରୋହଣ କରି ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଯୁଦ୍ଧ ପରିଚାଳନା କଲେ । ଯୁଦ୍ଧରେ ଢ଼େଙ୍କାନାଳ ବହୁ ସଂଖ୍ୟକ ସୈନ୍ୟ ନିହତ ହେଲେ । ଏହି ଯୁଦ୍ଧର ଭୟାଭୟତା କବିଚନ୍ଦ୍ରଙ୍କ ବୁଡ଼ାପଙ୍କ ପୋଥିର ଚତୁର୍ଥ ଓ ପଞ୍ଚମ ଛାନ୍ଦରେ ବର୍ଣ୍ଣନା କରାଯାଇଛି । ଅନୁଗୋଳ ସାମ୍ରାଜ୍ୟର ସାର୍ବଭୌମତ୍ୱ ରକ୍ଷା କ୍ଷେତ୍ରରେ ସୋମନାଥଙ୍କ ଭୂମିକା ଅତ୍ୟନ୍ତ ପ୍ରଶଂସନୀୟ । ରାଜା ସୋମନାଥ ସିଂହଙ୍କ ଅନେକ କାର୍ଯ୍ୟାବଳୀ ଦ୍ୱାରା ଅନୁଗୋଳର ଅସ୍ମିତା ବଜାୟ ରଖିଥିଲେ ।

**ଦଶପଲ୍ଲା ବିବାଦ :୧୮୩୧**

ମାଦଳା ପାଞ୍ଜି ଅନୁସାରେ ୧୭୩୮ ଖ୍ରୀଷ୍ଟାବ୍ଦରେ ରାଣୀଭୂଇଁ ଏବଂ ଯୋଡ଼ମ୍ବୁ ଅନୁଗୋଳ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଏହି ଦୁଇଟି ଗ୍ରାମ ଫେରାଇଦେବା ପାଇଁ ସେ ଦଶପଲ୍ଲା ରାଜାଙ୍କୁ ଅନୁରୋଧ କରିଥିଲେ । ଦଶପଲ୍ଲା ରାଜା ଏଥିରେ କର୍ଣ୍ଣପାତ ନକରି ସୋମନାଥ ସିଂହଙ୍କ ବିରୁଦ୍ଧରେ ଲୁଣ୍ଠନ ଅଭିଯୋଗ ଆଣିଥିଲେ । ଇଂରେଜ ସରକାର ଏହି ଘଟଣାରେ ସୋମନାଥ ସିଂହଙ୍କ ହାତଥିଲା ବୋଲି ମିଥ୍ୟା ତଦନ୍ତରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରି ଟ.୧୪୫୦ଙ୍କା ଅର୍ଥଦଣ୍ଡ ଭରଣା କରିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ସୋମନାଥ ସିଂହ ଏହାକୁ ଅମାନ୍ୟ କଲେ ।

**ହିନ୍ଦୋଳ ବିବାଦ : ୧୮୪୭**

ହିନ୍ଦୋଳ ରାଜା ଈଶ୍ୱର ଚନ୍ଦ୍ର ସିଂହ ତାଙ୍କ ରାଜ୍ୟର କୁରୁମିଠା ଗ୍ରାମଟିକୁ ସୋମନାଥ ସିଂହ ଜବର ଦଖଲ କରିଛନ୍ତି ବୋଲି କଂପାନୀ ସରକାରଙ୍କ ନିକଟକୁ ଅର୍ଜି ପଠାଇଲେ । ସରକାର ଖର୍ଦ୍ଦୀ ବିକ୍ରୀ ଅସିଦ୍ଧ ଦର୍ଶାଇ ରାଜା ସୋମନାଥ ସିଂହଙ୍କୁ ଟ. ୩୦୦୦ଙ୍କା ଜୋରିମନା ଦେବାକୁ ନିର୍ଦ୍ଦେଶ ଦେଲେ । ଏ ଅନ୍ୟାୟ ଆଦେଶ ପ୍ରତ୍ୟାହାର ପାଇଁ ସେ ସରକାରଙ୍କ ନିକଟରେ ଉତ୍ତର ଦାଖଲ କଲେ ।

**କୁଟୁରୀ ମାରଡ଼ା ଗ୍ରାମ ଲୁଣ୍ଠନ : ମ୍ୟାକ୍‌ଫରସନ୍ ଓ କ୍ୟାଡ଼େନ ହେଡ୍‌ଙ୍କ ଅଭିଯୋଗ :**

କୁଟୁରୀ ଓ ମାରଡ଼ା ଦଶପଲ୍ଲା ରାଜ୍ୟର ଦୁଇଟି କନ୍ଧ ଗାଁ ତା.୨୭.୦୨.୧୮୪୭ ରିଖରେ ଦଳେ ଲୋକ ଏହି ଗାଁରେ ନିଆଁ ଲଗାଇ ଦେଇ ଲୋକଙ୍କୁ ମୃତାହତ କରିଥିଲେ। ତଦନ୍ତରୁ ସେମାନେ ଜାଣିଛନ୍ତି ଯେ ଅନୁଗୋଳ ରାଜାଙ୍କ ପାଇକ ମାନେ ଏହା କରିଛନ୍ତି। ରାଜା ସୋମାନାଥ ସିଂହ ତାଙ୍କ ରିପୋର୍ଟରେ ଜଣାଇଥିଲେ ଯେ ନବଘନ କହର ତାର ସହଯୋଗୀମାନଙ୍କ ସହ କୁଟୁରି ମାରଡ଼ା ଗ୍ରାମବାସୀମାନଙ୍କୁ ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ମେଳି କରିବାକୁ ପ୍ରବର୍ତ୍ତାଇ ଥିଲେ। ଗ୍ରାମବାସୀ ମାନେ ସେମାନଙ୍କ କଥାରେ ରାଜି ନହେବାରୁ ସେମାନେ ଗ୍ରାମବାସୀମାନଙ୍କ ଉପରେ ଅତ୍ୟାଚାର କଲେ।

**କୁସୁମଗଡ଼ ଅଭିଯାନ :**

କ୍ୟାପ୍‌ଟେନ୍ ମ୍ୟାକ୍ ଫରସନ୍‌ଙ୍କ ଅଭିଯୋଗ ଥିଲା ଯେ, ସେ କିଛି ଫୋର୍ସଙ୍କୁ ସାଙ୍ଗରେ ଧରି ବୌଦର ବିଦ୍ରୋହୀ କନ୍ଧ ସର୍ଦ୍ଦାର ନବଘନ କହରକୁ ଧରିବା ପାଇଁ କୁସଙ୍ଗଗଡ଼ ବା କୁସୁମ ଗଡ଼ ଗାଁକୁ ଅବରୋଧ କରିଥିବା ସମୟରେ ରାଜା ସୋମନାଥଙ୍କ ନିର୍ଦ୍ଦେଶ କ୍ରମେ ତାଙ୍କର ପାଇକ ସର୍ଦ୍ଦାରମାନେ ମହାନଦୀ ପାର ହୋଇ ନବଘନ କହର ଆଦିଙ୍କୁ ସାହାଯ୍ୟ କରିବା ପାଇଁ କୁସଙ୍ଗଗଡ଼ ଯାଇଥିଲେ। ଫଳରେ ନବଘନ କହର ଓ ତାର ସାଥିମାନେ ମ୍ୟାକଫରସନ୍‌ଙ୍କ କବଳରୁ ଖସି ପଳାଇଥିଲେ। ଏହି ଅଭିଯୋଗ ସଂପର୍କରେ ରାଜା ସ୍ପଷ୍ଟ କରିଦେଇଥିଲେ ଯେ ଏପରି ଅଭିଯୋଗ ସଂପୂର୍ଣ୍ଣ ମିଥ୍ୟା ଓ କପୋଳକଳ୍ପିତ। ରାଜାଙ୍କର ଏପରି କୈଫୟତି ସନ୍ତୋଷଜନକ ନଥିବାର କହି କମିଶନର ଏଜେନ୍‌ସି ଅଫିସ୍ କ୍ୟାପଟେନ୍ ଡ଼ନଲପ୍‌କୁ ଉପରୋକ୍ତ ଦୁଇଟି ମାମଲାର ପୁନଃ ତଦନ୍ତ ପାଇଁ ନିର୍ଦ୍ଦେଶ ଦେଇଥିଲେ।

**ମେହେରବାନ ଦୋସ୍ତାନ :**

କମିଶନର ଗୋଲ୍‌ଡବରୀ ତା.୧୨.୧୧.୧୮୪୭ ରିଖରେ ଭାରତ ସରକାର ପଠାଇଥିବା ନିର୍ଦ୍ଦେଶକୁ ଅନୁଗୋଳ ରାଜାଙ୍କ ନିକଟକୁ ପଠାଇଥିଲେ । ଏବଂ ବିହିତ କାର୍ଯ୍ୟପାଇଁ ୨୫ଦିନ ସମୟ ଦେଲେ। ଏହି ପରୱାନାରେ କମିଶନର ପୂର୍ବଭଳି ରାଜାଙ୍କୁ ମେହେରବାନ୍ ଦୋସ୍ତାନ ସମ୍ବୋଧନ କଲେ ନାହିଁ। ଏପରି ଅପମାନ ବିରୋଧ କରି ରାଜା ସୋମନାଥ ଜବାବରେ ଲେଖିଥିଲେ, ସଂସାରରେ ଜାନ୍ ଓ ମାନ୍ - ଏ ଦୁଇଟି ସବୁଠାରୁ ବଡ଼ ଜିନିଷ। ଯେତେ କମିଶନର ଓଡ଼ିଶାକୁ ଆସିଛନ୍ତି, ସେମାନେ ଗଡ଼ଜାତ ପ୍ରଜା ଓ ନିୟମ ମାନି ସେହି ଅନୁସାରେ କାମ କରିଯାଇଛନ୍ତି। ସେମାନେ ଆମ୍ଭମାନଙ୍କୁ ନିଜର ପିଲା ପରି ଦେଖି ସେହିପରି ବ୍ୟବହାର କରିଯାଇଛନ୍ତି। ମାତ୍ର ଗୋଟିଏ କଥା ମନେରଖିବାକୁ ହେବ ଯେ, ସେମାନେ ବରାବର ଆମ୍ଭମାନଙ୍କୁ ଉପଯୁକ୍ତ ସମ୍ମାନ ଦେଉଥିଲେ। ମାତ୍ର ବର୍ତ୍ତମାନର କମିଶନର ମୋତେ ଚିଠି ଲେଖିଲାବେଳେ ଏହି ସମ୍ବୋଧନ ଉଠାଇଦେଇ ମୋର ଅପମାନ କରିଛନ୍ତି। କାଉନ୍‌ସିଲ ହାଉସ୍ ନ୍ୟାୟ ବିଚାରର ସ୍ଥାନ । ଯେଉଁ ଲୋକ ତାର ସମ୍ମାନ ହରାଇଲା, ତାର ଜୀବନର ମୂଲ୍ୟ କଣ ? ମୋର କେବଳ ଏତିକି ପ୍ରାର୍ଥନା ମୋର ଅର୍ଜି ଉପଯୁକ୍ତ ଭାବରେ ବିଚାର କରାଯାଉ। ଅନୁଗୋଳ ରାଜ୍ୟକୁ ଏକ ନୂତନ ରୂପରେଖ ଦେଇଥିଲେ ସୋମନାଥ ସିଂହ। ଶାସନର ପ୍ରଥମାର୍ଦ୍ଧରୁ ବିଭିନ୍ନ ଅଞ୍ଚଳର ଏକତ୍ରୀକରଣ ସହ ଅନୁଗୋଳ ରାଜ୍ୟର

ସାର୍ବଭୌମତ୍ୱ ବଜାୟ ରଖିବା ଥିଲା ତାଙ୍କର ଶ୍ରେଷ୍ଠ ଅବଦାନ। ବୁଢ଼ାପଙ୍କ ଯୁଦ୍ଧ ଥିଲା ଏହି ପରିକଳ୍ପନା (vision)ର ପ୍ରଥମ ପଦକ୍ଷେପ। ମିଥ୍ୟା , ଅଭିଯୋଗ, ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ସ୍ୱାଭିମାନର ସ୍ୱର ଉଠାଇ ସୋମନାଥ ସିଂହ ଅନୁଗୋଳର ଅସ୍ମିତାକୁ ବଜାୟ ରଖିଥିଲେ। ସୋମନାଥଙ୍କୁ ବନ୍ଦୀକରି ହଜାରୀବାଗ ଜେଲକୁ ପଠାଇବା ଇଂରେଜ ସରକାରଙ୍କ ପ୍ରତିଶୋଧ ମନୋବୃତ୍ତିର ଏକ ଅବିସ୍ମରଣୀୟ ଆଘାତ। କିନ୍ତୁ ଅନୁଗୋଳ ଜନସାଧାରଣଙ୍କ ଭିତରେ ସେ ଅସ୍ମିତାର ଯେଉଁ ଜୀବନୀ ଶକ୍ତି, ପ୍ରାଣ ପ୍ରବାହ ଭରି ଦେଇଥିଲେ ତାହା ପରିସ୍ଫୁଟ ହୋଇଥିଲା ୧୯୯୩ ମସିହା ଏପ୍ରିଲ ୧ତାରିଖରେ - ସ୍ୱତନ୍ତ୍ର ଜିଲ୍ଲାର ମର୍ଯ୍ୟାଦା ପାଇବା ପରେ। ସବୁଦିନ ପାଇଁ ରାଜା ସୋମନାଥ ଇତିହାସରେ ଅନୁଗୋଳ ଅସ୍ମିତାର ଏକ କ୍ଳାନ୍ତିହୀନ ଅଶ୍ୱାରୋହୀ ଭାବେ ସ୍ମରଣୀୟ ହୋଇ ରହିବେ।

**ସାହିତ୍ୟିକ ପ୍ରତିଭା :**

ଓଡ଼ିଆ ସାହିତ୍ୟରେ ପଥିତଯଶା ରାଜା ସୋମନାଥ ସିଂହଙ୍କ ନାମ ଏକାନ୍ତ ସ୍ମରଣୀୟ । ସୁଶାସକ, ସମାଜ ସଂସ୍କାରକ, ସୁସାହିତ୍ୟିକ, କାବ୍ୟ ରସିକ ସୋମନାଥ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ଇତିହାସରେ ଥିଲେ ପ୍ରେରଣାର ଏକ ବିରାଟ ଉତ୍ସ। ଢେଙ୍କାନାଳର ଦାମୋଦର ପଟ୍ଟନାୟକ ତାଙ୍କ "ସଂଗୀତ ସାଗର"ର ଦ୍ୱିତୀୟ, ତୃତୀୟ ଓ ଷଷ୍ଠ ଭାଗରେ ସୋମନାଥଙ୍କ ତିନୋଟି ଗୀତକୁ ସ୍ଥାନ ଦେଇଥିଲେ। ବିଜୟ ଚନ୍ଦ୍ର ମଜୁମଦାର ତାଙ୍କର Typical Selections from Oriya Literature ର ୨ୟ ଖଣ୍ଡରେ (ପ୍ରକାଶିତ ୧୯୨୩) ସୋମନାଥଙ୍କ ଗୋଟିଏ ଗୀତକୁ ପ୍ରାଧାନ୍ୟ ଦେଇଛନ୍ତି। ରାଜା ସୋମନାଥ ଶୃଙ୍ଗାର ରସାତ୍ମକ ସଙ୍ଗୀତ ପୂର୍ଣ୍ଣ "ସଂଗୀତ ମାଳା" ନାମକ ଏକ ପୁସ୍ତକ ରଚନା କରିଥିଲେ। ଏହାକୁ ବିଶିଷ୍ଟ ଆଲୋଚକ ରଚନା ସଂଗ୍ରହ କରିଥିଲେ। ଡ଼କ୍ଟର ଜାନକୀ ବଲ୍ଲଭ ମହାନ୍ତି ରାଜ କବି ସୋମନାଥଙ୍କ ୬୫ଟି ଗୀତ ନିମାପଡ଼ା ଅଞ୍ଚଳକୁ ସଂଗ୍ରହ କରି "ସୋମନାଥ ଗୀତାବଳୀ" ସଂକଳନ କରିଛନ୍ତି।

ରାଜା ସୋମନାଥ ସିଂହଙ୍କ ରଚନା ଗୁଡ଼ିକୁ ସାଧାରଣତଃ ଚାରିଭାଗରେ ବିଭକ୍ତ କରାଯାଏ । ସେଗୁଡ଼ିକ ହେଉଛି :-

- ଚଉତିଶା
- ଦେବୀ ମହାତ୍ମ୍ୟ
- ଭକ୍ତି ଗୀତ
- ଲୌକିକ ଆଦି ରସାତ୍ମକ ଗୀତ

**ଚଉତିଶା :**

ଚଉତିଶା ପ୍ରାଚୀନ ଓଡ଼ିଆ ଗୀତି ସାହିତ୍ୟର ଏକ ମୁଖ୍ୟ ବିଭାଗ। ପଞ୍ଚଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ଶେଷଭାଗ ପର୍ଯ୍ୟନ୍ତ ଓଡ଼ିଶାର ପ୍ରାୟ ଅନେକ କିଛି ଚଉତିଶା ରଚନା କ୍ଷେତ୍ରରେ ବିଭିନ୍ନ ପରୀକ୍ଷା ପ୍ରୟୋଗ କରି ଓଡ଼ିଆ ସାହିତ୍ୟକୁ ଯେପରି ବୈଚିତ୍ର୍ୟରେ ପୂର୍ଣ୍ଣ କରିଛନ୍ତି ତାହା ଅନ୍ୟ ପ୍ରାନ୍ତୀୟ ଭାଷାରେ ଦେଖାଯାଏ ନାହିଁ। ବିଷୟ ବସ୍ତୁର ବିବିଧତା, ଛନ୍ଦ ଓ ଆଳଙ୍କାରିକତା, ସଂଗୀତାତ୍ମକତା,କାବ୍ୟ ଚଟୁଳତା ପ୍ରଭୃତି ଚଉତିଶା ଗୁଡ଼ିକୁ ଓଡ଼ିଆ ଜାତିର ରସ ଚେତାନା ରେ ଅମ୍ଳାନ ଓ ଉଜ୍ଜଳ ରଖିଅଛି। "ସୁନ୍ଦରୀ ଚଉତିଶା" ଶ୍ରୀକୃଷ୍ଣ ଓ ରାଧାଙ୍କ ଉକ୍ତି ପ୍ରତ୍ୟୁକ୍ତି ମୂଳକ। ଶ୍ରୀକୃଷ୍ଣଙ୍କ ରାଧାଙ୍କ ପ୍ରତି ଚାଟୁକ୍ତି ଓ ଶ୍ରୀରାଧାଙ୍କ ପ୍ରତ୍ୟୁତ୍ତର ଏହି

ଚଉତିଶାରେ ବର୍ଣ୍ଣିତ । ଏଥିରେ ୩୪ଟି ପଦ ଅଛି। ସୋମନାଥଙ୍କ ଚଉତିଶାରେ ରଚିତ ଅଳଙ୍କାର ଯୁଗର ପ୍ରଭାବ ଦେଖାଯାଏ। ରାଜା ସୋମନାଥଙ୍କ ସମୟ ହେଉଛି ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧ । ଏହା ପୂର୍ବରୁ ଅଷ୍ଟାଦଶ ଶତାବ୍ଦୀ ଥିଲା ରୀତି ବା ଅଳଙ୍କାର ଯୁଗ। ସାରଳାଙ୍କ ସାହିତ୍ୟରେ ଓଡ଼ିଆ କାବ୍ୟର ଯେଉଁ ଉନ୍ମେଷ ଘଟିଥିଲା, ନରସିଂହ ସେଣଙ୍କ ଠାରୁ ଶିଶୁଙ୍କର ବିଷ୍ଣୁଦାସ ଓ ପ୍ରତାପ ରାୟ ପ୍ରମୁଖ ଙ୍କ ପର୍ଯ୍ୟନ୍ତ ବିଭିନ୍ନ କାବ୍ୟ କର୍ତ୍ତାଙ୍କ କାବ୍ୟରେ ତାହା ପୂର୍ଣ୍ଣତା ପାଇଥିଲା। ଅଷ୍ଟାଦଶ ଶତାବ୍ଦୀରେ ତାର ପୁନାରାବୃତ୍ତିରେ କୌଣସି ସ୍ୱାଦ ନଥିଲା। ପୁନଶ୍ଚ ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ ଆଳଙ୍କାରିକ ଆଙ୍ଗିକକୁ ଆଶ୍ରହ କରିଥିଲା। ପୁନଶ୍ଚ ଓଡ଼ିଶାର ମନ୍ଦିର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ ଆଳଙ୍କାରିକତାର ପ୍ରଭାବ ଓଡ଼ିଆ କାବ୍ୟ ସାହିତ୍ୟକୁ ମଧ୍ୟ ସଂକ୍ରାମିତ କରିଥିଲା। ଏଣୁ ରାଜା ସୋମନାଥ ସିଂହ ଏପରି ପ୍ରଭାବରୁ ନିଜକୁ ମୁକ୍ତ କରିପାରିନଥିଲେ।

**ଦେବି ମହାତ୍ମ୍ୟ ବା ମାଳଶ୍ରୀ :**

ସପ୍ତଶତୀ ଚଣ୍ଡିର କଥାବସ୍ତୁ ଅବଲମ୍ବନରେ କବି ସୋମନାଥଙ୍କ ଚଣ୍ଡୀ ମହାତ୍ମ୍ୟ ରଚିତ। ଏହା ମାଳଶ୍ରୀ ରାଗରେ ଲିଖିତ। ଏଥିରେ ତ୍ରୟୋଦଶଟି ଆଖ୍ୟାନ ଅଛି। ସପ୍ତଶତୀ ଚଣ୍ଡୀ ଅନୁସରଣରେ ଲିଖିତ ଏହା ପ୍ରଥମ ଓଡ଼ିଆ କାବ୍ୟ । ପ୍ରତ୍ୟେକ ଆଖ୍ୟାନରେ ଘୋଷାପଦ '' ଜୟ ଜୟ '' ଶବ୍ଦରୁ ଆରମ୍ଭ। ଏହା ଅତ୍ୟନ୍ତ ସରଳ ଭାଷାରେ ରଚିତ :

| | |
|---|---|
| ପ୍ରଥମ ଆଖ୍ୟାନ | ଜୟ ଜୟ ବିଶେଶ୍ୱରୀ |
| ଦ୍ୱିତୀୟ ଆଖ୍ୟାନ | ଜୟ ଜୟ ସିଂହବାହିନୀ |
| ତୃତୀୟ ଆଖ୍ୟାନ | ଜୟ ଜୟ ଭାଗବତୀ |
| ଚତୁର୍ଥ ଆଖ୍ୟାନ | ଜୟ ଜୟ ହେ ମାଳିନୀ ମଙ୍ଗଳେ |
| ପଞ୍ଚମ ଆଖ୍ୟାନ | ଜୟ ଜୟ ବିଷ୍ଣୁ ହୃଦୟ ସ୍ଥାପୟିନୀ |
| ଷଷ୍ଠ ଆଖ୍ୟାନ | ଜୟ ଜୟ ଗିରି ନନ୍ଦିନୀ |
| ସପ୍ତମ ଆଖ୍ୟାନ | ଜୟ ଜୟ ମାତା ତ୍ରିଶୂଳ ଧାରିଣୀ |
| ଅଷ୍ଟମ ଆଖ୍ୟାନ | ଜୟ ଜୟ ମହାକୋପୀ |
| ନବମ ଆଖ୍ୟାନ | ଜୟ ଜୟ ଦୈତ୍ୟ ରାଜନନ୍ଦିନୀ |
| ଦଶମ ଆଖ୍ୟାନ | ଜୟ ଜୟ ଶାକମ୍ବରୀ |
| ଏକାଦଶ ଆଖ୍ୟାନ | ଜୟ ଜୟ ସର୍ବ ବିପତ୍ତିନାଶିନୀ |
| ଦ୍ୱାଦଶ ଆଖ୍ୟାନ | ଜୟ ଜୟ ଚାରୁ ତ୍ରିନେତ୍ର ଧାରିଣୀ |

ଘୋଷାପଦର ଦ୍ୱିତୀୟ ପାଦର ପ୍ରଥମରେ ''ପୁଣି'' ଶବ୍ଦ ବ୍ୟବହାର କରାଯାଇଛି।

ଏଥିରେ ସଂସ୍କୃତ ମାତ୍ରା ବୃତ୍ତ ଛନ୍ଦ ଅନୁସାରେ ଲେଖାଯାଇଛି।

''କୁମ୍ଭଶୋଭିନୀ ଆର୍ତ୍ତନାଶିନୀ ଦୁଷ୍ଟଦୈତ୍ୟ ନିବାରିତେ, ପାପଶୋଭିନୀ , ତ୍ରିପୁର ମୋହିନୀ ସର୍ପକୁର୍ତ୍ତଳ ରାଜିତେ।''ଏଥିରେ ଧୂମ୍ର ଲୋଚନ, ଚଣ୍ଡମୁଣ୍ଡ, ରକ୍ତବୀଜ, ନିଶୁମ୍ଭ ଶୁମ୍ଭ, ମଧୁ କୈଟଭ ବଧ, ମହିଷାସୁର ବଧ ପ୍ରଭୃତି ସଂକ୍ଷେପରେ ବର୍ଣ୍ଣିତ।

ଭକ୍ତି ଗୀତ : କବି ଇଶ୍ୱର ବିଶ୍ୱାସୀ ଥିଲେ। ତାଙ୍କ ରଚିତ ଜଗନ୍ନାଥ ଜଣାଣ, ବିଷ୍ଣୁ ବନ୍ଦନା, ଜଗନ୍ନାଥ ବନ୍ଦନାରୁ ଏହାର ପ୍ରମାଣ ମିଳେ। ପୁନଶ୍ଚ ଇଂରେଜ ଅପଶାସନ ଲୋକଙ୍କ ସାମାଜିକ ଓ ଅର୍ଥନୈତିକ ଜୀବନଧାରାରେ ବିପନ୍ନ ଆଣିଥିଲା । ଶାସନ କଳରେ ଥିବା ଅଣ ଓଡ଼ିଆ ମାନେ ଏ ଦେଶର ହିତ ପ୍ରତି ଅବହିତ ନଥିଲେ। ସେମାନେ ଶୋଷଣକୁ ଏକମାତ୍ର ବାସ୍ତବ ଧର୍ମରୂପେ ଗ୍ରହଣ କରିନେଇଥିଲେ। ପଲ୍ଲୀ ବହୁଳ ଓଡିଶାର ଜୀବନ ସହରୀ ଜୀବନ ସହ ସଂପର୍କ ନଥିଲା। ଇଂରେଜମାନଙ୍କ ଜମିଜମା ବନ୍ଦୋବସ୍ତ ଓ ତାର ବିଚାର ପାଇଁ ସହରର ବିଚାରାଳୟ ସ୍ଥାପନ ହେତୁ କେତେକ

ସହରୀ ମୁଷ୍ଟିମେୟ କର୍ମଚାରୀମାନଙ୍କ ଦ୍ୱାରା ପଲ୍ଲୀ ନିୟନ୍ତ୍ରିତ ହେଉଥିଲା । ଫଳରେ କଂପାନୀର ଇଂରେଜ ଓ ଅଣଓଡ଼ିଆ କର୍ମଚାରୀବୃନ୍ଦ ସମଗ୍ର ଓଡ଼ିଆ ଜନତାର ଭାଗ୍ୟ ନିୟନ୍ତା ଥିଲେ । ଜନସାଧାରଣଙ୍କର ଅସନ୍ତୋଷ ଓ ଅନିଚ୍ଛା କେବଳ ପାଇକ ବିଦ୍ରୋହ ବେଳେ ଅପ୍ରତିହତ ଚିତ୍କାର ଭାବେ ଅଭିବ୍ୟକ୍ତି ଲାଭ କରିଥିଲା । ବିଦ୍ରୋହ ପରେ ଏଜାତି ହେଲା ଅବହେଳିତ, ଉପେକ୍ଷିତ ଓ ସମସ୍ତ ସୁଖ ସନ୍ତୋଷରୁ ବଂଚିତ । ତେଣୁ ପାଇକ ବିଦ୍ରୋହ ହେଉଛି ଓଡ଼ିଆ ଜାତିର ମୃତ୍ୟୁପଥ ଅଭିଯାନର ପ୍ରଥମ ମାଇଲ ଖୁଣ୍ଟ । ସମ୍ଭବତଃ ଓଡ଼ିଶାର ଏକ ଚିତ୍ରପଟ ଏବଂ ବାରମ୍ବାର ଇଂରେଜମାନଙ୍କ ଦ୍ୱାରା ଅପଦସ୍ତ କବି ସୋମନାଥ ପ୍ରଭୁ ଜଗନ୍ନାଥଙ୍କୁ ଜଣାଣ କରିଥିଲେ ।

କିଞ୍ଚିତେ ଦୟାନୋହିଲା

କମଳ ଲୋଚନ ପ୍ରଭୁ ଆଉ ଆରଉ  
ମୋ କର୍ମ ବିଫଳ ହୋଇଲା ହେ  
କମଳା କାନ୍ତକୁ ଭରସା କରିଣ  
ଲୋକହସା ଏବେ ହୋଇଲା,  
ଭାଷେ ଲୋକନାଥ ଅନୁକୂଳ ପତି  
ଏ ନିନ୍ଦା କାହାକୁ ହୋଇଲା ହେ ।

(ଜଗନ୍ନାଥ ଜଣାଣ, ସୋମନାଥ ପଦାବଳୀ ପୃ-୯୫)

ପ୍ରେମ ଗୀତିକା :

ଏହି ଗୀତ ଗୁଡ଼ିକ ନାୟକର ଅନୁଭୂତିକୁ ନେଇ ରଚିତ । ଅନେକ ଗୀତରେ ନାୟକର ବିରହ ଚିନ୍ତା ସମ୍ଭୋଗ ଭାବନା, ନାୟିକାର ରୂପର ପ୍ରଶଂସା ଦେଖିବାକୁ ମିଳେ । ନାୟକର ଚିନ୍ତା ରାଜ୍ୟରେ ଯେଉଁ ନାୟିକାର ଭାବନା ଦେଖା ଦେଇଛି ସେ ହେଉଛି ରତି ଲାଳସୀ, ସମ୍ଭୋଗ ଆତୁରା ଓ ବିବିଧ ରତି ପ୍ରବଣା । "ରେ ରସ ବନ୍ଧୁ" ଗୀତଟି ଢ଼ଗ ବୃତ୍ତରେ ଲିଖିତ । ଏଥିରେ ୧୪ଟି ପଦ ଅଛି । ସାଧାରଣ ନାରୀ ପୁରୁଷଙ୍କ ପ୍ରଣୟାନୁଭୂତିମୂଳକ ଭକ୍ତି ତଥା ରାଧାକୃଷ୍ଣଙ୍କ ପ୍ରୀତି ସମ୍ବନ୍ଧୀୟ ଭକ୍ତି ବର୍ଣ୍ଣିତ ।

ଗୁଛିଲି ଫୁଲ ମାଳତୀ  
ନାଗର ବରକୁ କେ ଆଣିଦେବ  
ରେ ରସ ବଂନ୍ଧୁ, କରିବି ପର ପୀରତି  
(ସୋମନାଥ ଗୀତାବଳୀ, ପୃ-୭୫)

"ସୋମନାଥ ଗୀତାବଳୀ"ରେ ୪୩ଟି ଏପରି ଆଦି ରସାତ୍ମକ ଗୀତ ସ୍ଥାନୀତ କରାଯାଇଛି ।

ଭାଷା :

କବି ସେମାନାଥ ସାଧାରଣ କଥିତ ଭାଷା ବ୍ୟବହାର କରି ଗୀତ ରଚନା କରିଛନ୍ତି । ଏହା ତାଙ୍କର ବୈଶିଷ୍ଟ୍ୟ । ଅକଟ, କଷ୍ଟ, ଝିମିଟି, ବୋଲଣା, ଛନଛନ, ତେରଛ, ଲସି, ଫେଡ଼ି, ଛଇଳ, ବଣା, ବାଲୁତ, ଭେଳିକି, ଉଗାରିହସ, ହେଜ, ଢୁଡ଼ି ପ୍ରଭୃତି ଅନେକ ଦେଶଜ ଶବ୍ଦ ସେ ବ୍ୟବହାର କରିଛନ୍ତି । ଆଞ୍ଚଳିକ ଶବ୍ଦର ପ୍ରୟୋଗ ଓ ଉଚ୍ଚାରଣଗତ ଭିନ୍ନତା ମଧ୍ୟ ତାଙ୍କ ଗୀତରେ ଦେଖାଯାଏ । "ଟି ପରିବର୍ତ୍ତେ "ତି"ର ବ୍ୟବହାର ନେ ଦେଖାଯାଏ । ଧୂର, ଲାବା, ଲକସ, ପରି ଅନେକ ଆଞ୍ଚଳିକ ଶବ୍ଦର ବ୍ୟବହାର କରାଯାଇଛି । କବିଙ୍କ ଗୀତ ଗୁଡ଼ିକରେ ଭାଷାରେ ସରଳତା ନିମ୍ନ ଗୀତ ଗୁନିକରୁ ଜଣାଯାଏ ।

କେଣେ ଜଳ ଜଳ ଲାଉଣ ପୁଣି  
ଯମୁନାତଟେ ମୂରଲୀପାଣି  
ଦେଖି ନଟବର ଲଗାଇବ ହଟ  
ବୋଲଇବ କାହିଁକି ଆସ ମିତଣୀ ।  
ହୋଇଗଲେ ମୁକ୍ତ ଛାଡ଼ିଦେବା ବାଟ  
ନୋହିଲେ ଘରକୁ ଯାଅ ସଜନୀ

କେତେ ଆଉ କଥା ଲଗାଇବ ସେହି
ଉଛୁର ହୋଇଲେ ବୋଲଣା ଶୁଣି
ସୁଧା ନିହୁଟିଲା ପରି ଲାଗୁଥିବ
ଅଧିକେ ବିନ୍ଧିବ ମଦନ ପୁଣି ।

ଗୋପୀଭାଷା, ମଥୁରାମଙ୍ଗଳ ପ୍ରଭୃତି ପ୍ରାଚୀନ କାବ୍ୟ ଓ ଗୋପାଳ କୃଷ୍ଣ, ବନମାଳୀ, ପ୍ରଭୃତି ପ୍ରାଚୀନ ଗୀତିକାରଙ୍କ କବିତା ଦ୍ୱାରା କବି ପ୍ରଭାବିତ । ଗୋପାଳ କୃଷ୍ଣଙ୍କ ଲିଖିତ "ଶ୍ୟାମଳ ଗାତ୍ରେ ମୋ ନେତ୍ର ପଡ଼ିଲାରେ" ଗୀତର ପ୍ରଭାବ କବି ସୋମନାଥଙ୍କ ନିମ୍ନଗୀତରେ ଅତ୍ୟନ୍ତ ସ୍ପଷ୍ଟ ।

ନାଗର ମୋହନ ରୂପ ମୋହିଲାରେ
ମୋହିଲାକ୍ଷଣି ଅତନୁ ଦହିଲାରେ
ଥରଥର କରି ଦେଲାଦେହୀ ଝର ଜର ନେତ୍ରୁ ନୀର ବହି
ମାର ମାରଣ ତ କହି ନୋହିଲାରେ ।
ଜଣଗଲାଣି ଏଥର ବଂଚି ନୋହେ
ଜାଣ ବୁଡ଼ିବ ନିଶ୍ଚୟ ତାଙ୍କ ସ୍ନେହେ
ଏଣିକି ନାହିଁ ବିଚାର ମୋହିଲେ ଶ୍ୟାମସୁନ୍ଦର
ସୋମନାଥ ବୀରବର ଭାବିଲାରେ ।

'ସଜନୀ ବୁଝିଗଲି' ଆଦି ଗୀତରେ ବନମାଳୀଙ୍କ ଆଦ୍ୟଗୁଛ ବିଶିଷ୍ଟ ଗୀତରେ ପ୍ରଭାବ ଲକ୍ଷ୍ୟ କରାଯାଇପାରେ । ସେହିପରି 'ଧଡକମୋର ରସବତୀ ତନୁ ଥର ଥର କରି ଦେଲାରେ' ଏବଂ 'ତରତର କରାଇ ବନ୍ଧୁ ଥରାଇ ମୋ ଚନ ଚାହିଁ ଗଲାରେ' ଗୀତରେ ପ୍ରାଚୀନ କବି ରାମକୃଷ୍ଣଙ୍କ ସଂଗୀତର ରାଗ ଶୈଳୀର ଅନୁକଣ ଦେଖାଯାଏ । ଶବ୍ଦାବଳୀର କୋମଳତା, ଭାବର ମାଧୁରୀ ଓ ବର୍ଣ୍ଣନାର ସାବଲୀଳ ପ୍ରକାଶ ସୋମନାଥ ଗୀତାବଳୀକୁ ଏକ ସମ୍ମୋହନ ଲାଳିତ୍ୟ ପ୍ରଦାନ କରିଛି । ବିଭିନ୍ନ ରାଗ ରାଗିଣୀ ବ୍ୟବହାର ଦ୍ୱାରା ଓଡ଼ିଆ ସାହିତ୍ୟ ଭଣ୍ଡାରରେ ଏକକ ଗୌରବ ଅଧିକାରୀ ହୋଇଛନ୍ତି ।

**ଆଳଙ୍କାରିକତା :**

ରାଜକବି ସୋମନାଥ ସିଂହ ରୀତି ବା ଅଳଙ୍କାର ଯୁଗର ପରମ୍ପରା ଦ୍ୱାରା ପ୍ରଭାବିତ । ଅନୁପ୍ରାସଯମକ ପ୍ରଭୃତି ଶବ୍ଦାଳଙ୍କାର ପ୍ରୟୋଗ ଦ୍ୱାରା କବି କାବ୍ୟକୁ ଶ୍ରୁତିମଧୁର କରିପାରିଛନ୍ତି । ଏହାର ପ୍ରୟୋଗ ସଂପର୍କରେ ତାଙ୍କ ପ୍ରବଣତାର କେତେକ କାରଣ ମଧ୍ୟ ରହିଥିଲା । ପ୍ରଥମତଃ ରାଜ୍ୟର ସୁହୃଦୟ ପାଠକ ଗୋଷ୍ଠୀର ରୁଚିକୁ ଉଦ୍‌ବୋଧିତ କରିବା, ଦ୍ୱିତୀୟତଃ ରାଜ୍ୟ ସଂସ୍କୃତ କାବ୍ୟ ସାହିତ୍ୟର ବ୍ୟାବକ ଚର୍ଚ୍ଚା । ତୃତୀୟତଃ ଆଡ଼ମ୍ବପର ପୂର୍ଣ୍ଣ ବାଣୀ କଳାର ପ୍ରତି ତାଙ୍କର ମମତା ଥିଲା ସର୍ବାଧିକ । ଏହି ସବୁ କାରଣରୁ ରୀତିଯୁଗର କାବ୍ୟାଦର୍ଶ ଅଳଙ୍କାର ପ୍ରୟୋଗରେ ଅଧିକତର ନିପୁଣତା କବି ସୋମାନଥ ସିଂହ ପ୍ରଦର୍ଶନ କରିଥିଲେ ।

କବି 'ର'ନିୟମ 'କ' ନିୟମ ଅବଲମ୍ବନ କରି ଲେଖିବା ସଂଗେ ସଂଗେ ଆଦ୍ୟରେ 'କ' ଠାରୁ 'ଚ' କ୍ରମ ଏବଂ 'ଛ' ଠାରୁ 'ଠ' କ୍ରମ ରକ୍ଷା କରି ଗୀତ ରଚନା କରିଛନ୍ତି । ଅନୁପ୍ରାସ ରଚନାରେ କବିଥିଲେ ସିଦ୍ଧହସ୍ତ :

ବରଜ ବରନ ଆସୁବାର ତାକୁ ଯାଂରେ
ବଡ଼ ପରମାଦ ଶ୍ୟାମ ଦେଖି ତରକାରେ
ବଳଇ କଟୁ ବଚନ ଆସୁଚାକୁ ଯାରେ ।
ବୋଲେ ସୋମନାଥ ବୀରବର ସେ ଯାରେ
ବିଚାର ନ କରି ରାଧେ ସେ ନାମ ମଜାରେ ।

ଶୃଙ୍ଖଳା ଅଳଂକାରରେ ରଚିତ ନିମ୍ନ ଗୀତଟିରେ କବିଙ୍କର ଅଳଙ୍କାର ଯୋଜନାର ସାଫଲ୍ୟ ଜଣାଯାଏ ।

ନଇଲେ ମୋ ପୁରକୁ ଗୋ ଶ୍ୟାମ ସୁନ୍ଦର

ଦର ମୁଁ କରନ୍ତି ଦୂର
ଦୂର ହୋଇଯାନ୍ତା ମାର, ମାରନ୍ତା କାହିଁକି ଶର
ସରସ ସଂଗେ ମୋହର
ମଣ୍ଡିଣ ବାସରେ ବାସ ବାସ କୁସୁମେ ହରଷ
ରସରେ ବଳାଇ ଆଶା ଆଶ ଭାଙ୍ଗିଣ ନିରାଶ ।

'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ସମସ୍ତ ସ୍ୱର ଓ ବ୍ୟଞ୍ଜନର କ୍ରମରକ୍ଷା ସହ ବର୍ଣ୍ଣମାତୃକା ପ୍ରବନ୍ଧ ଅନୁକରଣ କରି କବି ଗୋପୀ ଚିନ୍ତା ଗୀତିକାଟି ରଚନା କରିଛନ୍ତି ।

କବି ସୋମନାଥଙ୍କ ସବୁଗୀତ ଏପର୍ଯ୍ୟନ୍ତ ସଂଗୃହୀତ ହୋଇପାରିନାହିଁ । ବନ୍ଦୀ ଅବସ୍ଥାରେ ସେ ହୁଏତ କେତେକ ଗୀତ ରଚନା କରିଥିବେ । କିନ୍ତୁ ଏବେସୁଦ୍ଧା ଯାହା ପ୍ରକାଶିତ ହୋଇଛି ସେଥିରୁ କିନ୍ତୁ ଆମେ ତାଙ୍କର ଉତ୍ସାହର ଆନ୍ତରିକ ଓ ଆଧ୍ୟାତ୍ମିକ ଦୃଷ୍ଟିର ପରିଚୟ ପାଉ ।

ରାଜ କବି ସୋମନାଥ ସିଂହ ଙ୍କ କୃଷ୍ଣଲୀଳାତ୍ମକ ଗୀତ ଓ ଆଦି ରସାତ୍ମକ ଚୌପଦୀ ଗୁଡ଼ିକ ଶାନ୍ତ, କୋମଳ ଭାବ ରାଜିର ମଧୁକ୍ଷରା ଧାରା । ଅଷ୍ଟାଦଶ ଶତାବ୍ଦୀର ଶେଷାର୍ଦ୍ଧ ଏବଂ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବହୁ ଗୀତିକବି ଜନ୍ମ ଗ୍ରହଣ କରି ଓଡ଼ିଆ କାବ୍ୟ ସାହିତ୍ୟର ଏହି ବିଭାଗଟିକୁ ପରିପୁଷ୍ଟ କରିଥିଲେ । ଏମାନଙ୍କ ମଧ୍ୟରେ ଗୋପାଳକୃଷ୍ଣ ଗୌରହରି ବନମାଳୀ, ହରିବଂନ୍ଧୁ, ନରସିଂହ ପଟ୍ଟନାୟକ ଓ ଶ୍ରୀ କରଣ ଗୌରାଙ୍ଗ ପଟ୍ଟନାୟକ ପ୍ରମୁଖ ଉଲ୍ଲେଖ ଯୋଗ୍ୟ । ସଙ୍ଗୀତର ଯୁଗ ଆଜି ବିଦାୟ ନେଇଛି । ଆଜିର ସଂଗୀତର ଅଛି ମନ୍ମୟତା କିନ୍ତୁ ନାହିଁ ସୋମନାଥଙ୍କ ତନ୍ମୟତା ।

## ସହାୟକ ଗ୍ରନ୍ଥାବଳୀ


୧. ଅନୁଗୋଳର ଭୂଗୋଳ ଇ ଇତିହାସ
ଭଗବାନ ଚରଣ ଦାସ
୨. ବୁଢ଼ାପଙ୍କ ଯୁଦ୍ଧ: ରାୟଗୁରୁ କବିଚନ୍ଦ୍ର ନୃସିଂହ
୩. ସୋମନାଥ ଗୀତାବଳୀ ଡ଼ା:ଜାନକୀ ବଲ୍ଲଭ ମହାନ୍ତି
୪. ଅନୁଗୋଳର ଇତିହାସ ଗୋବିନ୍ଦ ରାୟଗୁରୁ
୫. ଅନୁଗୋଳ : ଇତିହାସ ଓ ସଂସ୍କୃତି
ଡ଼ା. ହରିହର କାନୁନ୍‌ଗୋ
୬. ଅନୁଗୋଳ ରାଜବଂଶ ଓ ବନ୍ଧୁ ସଦସ୍ୟ
ଶ୍ରୀ ନରସିଂହ ମିଶ୍ର
୭. ଅନୁଗୋଳ ଇତିହାସ: ଶ୍ରୀ ଶତ୍ରୁଘ୍ନ ମିଶ୍ର
୮. ଓଡ଼ିଆ ଜାତିର ଇତିହାସ: ଡ଼. ନବୀନ କୁମାର ସାହୁ
୯. ଓଡ଼ିଆ ସାହିତ୍ୟ ମଧ୍ୟପର୍ବ:ଶ୍ରୀ ସୁରେନ୍ଦ୍ର ମହାନ୍ତି
୧୦. ଓଡ଼ିଆ ସାହିତ୍ୟର ଇତିହାସ:
ଡ଼ା. ନଟବର ସାମନ୍ତରାୟ
୧୧. History of Orissa ,
Vol-VI Prof. P. Mukherjee
12. Gazetteer of Angul Dist. Admn., Angul
13. Somanath Singh - The Last Independent Ruler (Cultural Heritage of Angul ) Dr. B.Sahoo
14. Bengal District Gazeetter and Angul LSSO' Malley
15. Orissa in the Making B.C. Mujumdar
16. Feudatory States of Orissa LEBL obden Ramsay




# ଅନୁଗୋଳ ରାଜବଂଶ ସୋମନାଥ ସିଂହଙ୍କ ପୂର୍ବ ଓ ପର

ବଂଶୀଧର ପ୍ରଧାନ (ଅଧ୍ୟକ୍ଷ)
ବନ୍ତଳା ମହାବିଦ୍ୟାଳୟ, ବନ୍ତଳା

ଅନୁଗୋଳ ଆଧୁନିକ ଓଡ଼ିଶାର ମଧ୍ୟସ୍ଥଳରେ ରହି ଏକ ଗୁରୁତ୍ୱପୂର୍ଣ୍ଣ ଜିଲ୍ଲାର ସମ୍ମାନ ଲାଭ କରିଛି । ଦୁଃଖର ବିଷୟ ଅନୁଗୋଳର ଇତିହାସ ଅସ୍ପଷ୍ଟ, ଦୋଦୁଲ୍ୟମାନ ଓ କୁହେଳିକାଚ୍ଛନ୍ନ । ଐତିହାସିକ ମାନେ ଓ କେତେକ ଲେଖକ ଅନୁଗୋଳ ଇତିହାସ ଲେଖିବା ପାଇଁ ଉଦ୍ୟମ କରିଛନ୍ତି, କିନ୍ତୁ ଏହାର ପରିଷ୍କାର ଚିତ୍ର ପ୍ରଦାନ କରିପାରି ନାହାନ୍ତି । ବର୍ତ୍ତମାନର କେତେକ ଯୁବ ଅଧ୍ୟାପକ ଓ ଐତିହାସିକ ଅନୁଗୋଳର ଇତିହାସ ବିଷୟରେ ଗବେଷଣା କରୁଛନ୍ତି ; ଆଶା କରାଯାଏ , ସେମାନେ ନିଶ୍ଚିତ ଭାବରେ ଏ ବିଷୟରେ ଠିକ୍ ତଥ୍ୟ ପ୍ରଦାନ କରିବେ । ସମୁଦ୍ର ମନ୍ଥନରୁ ଯେଭଳି ଅମୃତ ଭଳି ଦୁର୍ମୂଲ୍ୟ ବସ୍ତୁ ପ୍ରାପ୍ତ ହୋଇଥିଲା , ଅନୁଗୋଳର ଇତିହାସ ଦିନେନା ଦିନେ ଲୋକଲୋଚନକୁ ଆସିବ, ଏହା ନିଃସନ୍ଦେହ ।

ମୁଁ ଜଣେ ଐତିହାସିକ ବା ପ୍ରାବନ୍ଧିକ ନୁହେଁ, କେବଳ ଅନୁଗୋଳ ସମ୍ବନ୍ଧରେ ଆଲୋକପାତ କରିଥିବା କେତେକ ମନିଷୀ ମାନଙ୍କର ତଥ୍ୟକୁ ଭିତ୍ତିକରି ସୋମନାଥ ସିଂହ ଜଗଦେବ ଏବଂ ତାଙ୍କ ପୂର୍ବରୁ ଓ ପରେ ଅନୁଗୋଳ ରାଜବଂଶର ଏକ ଐତିହାସିକ ତଥ୍ୟ ପ୍ରଦାନ କରୁଛି ।

ଅନୁଗୋଳର ପ୍ରାଚୀନ ଇତିହାସ ସମ୍ବନ୍ଧରେ ତଥ୍ୟ ଦେବା ସମ୍ଭବ ପର ହେଉନଥିବାରୁ ଏହି ବିଷୟରେ ଐତିହାସିକ ମାନେ ଗବେଷଣା କଲାପରେ ଠିକ୍ ତଥ୍ୟ ପ୍ରଦାନ କରାଯିବ । ଯେଉଁଠାରୁ ତଥ୍ୟ ମିଳୁଛି, ତାହା ପ୍ରଦାନ କରୁଛି । ଖ୍ରୀଷ୍ଟିୟ ଅଷ୍ଟମ , ନବମ ଶତାବ୍ଦୀରେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଭୌମକରଙ୍କର ବଂଶର ଶାସନ ପ୍ରତିଷ୍ଠିତ ହୋଇଥିଲା । ସେହି ବଂଶର ସାମ୍ରାଜ୍ୟ ଆଧୁନିକ ମେଦିନୀପୁର ଜିଲ୍ଲାରୁ ଗଞ୍ଜାମ ପର୍ଯ୍ୟନ୍ତ ବିସ୍ତୃତ ଲାଭ କରିଥିଲା । ସେହି ସମୟରେ ଓଡ଼ିଶା ଅନେକ ମଣ୍ଡଳଦ୍ୱାରା ବିଭକ୍ତ ହୋଇଥିଲା । ଯଥା: କୋଦାଳକ ମଣ୍ଡଳ, ଯମ ଗର୍ତ୍ତମଣ୍ଡଳ, ଐରାବତ ମଣ୍ଡଳ, ଖିଞ୍ଜିଳି ମଣ୍ଡଳ ଓ ବଣାଇ ମଣ୍ଡଳ । ପ୍ରତ୍ୟେକ ମଣ୍ଡଳ ଗୋଟିଏ ଗୋଟିଏ ରାଜବଂଶର କର୍ତ୍ତୃତ୍ୱରେ ଶାସନାଧୀନ ଥିଲା । ଅନୁଗୋଳ ଖିଞ୍ଜିଳି ମଣ୍ଡଳର ଅଂଶ ବିଶେଷ ହୋଇ ଏହାର ରାଜଧାନୀର ନାମ **ଅଙ୍ଗୁଳକ ପଟ୍ଟନ** ଥିଲା । ଏହାକୁ ଭଞ୍ଜ ବଂଶୀୟ ରାଜାମାନେ ଶାସନ କରୁଥିଲେ ଏବଂ ଏହି ବଂଶର ଶ୍ରେଷ୍ଠ ରାଜା ଥିଲେ ନେତ୍ରଦେବ ଭଞ୍ଜ । ତାପରେ ଏହି ଭଞ୍ଜମାନେ ଭୌମକରଙ୍କ ଦ୍ୱାରା ବିତାଡ଼ିତ ହୋଇଥିଲେ ଓ ଏମାନେ ବୌଦ ଅଞ୍ଚଳରେ ଶାସନ କରୁଥିଲେ । ଭୌମକର ମାନେ କିଛିଦିନ ଏଠାରେ ଶାସନ କଲାପରେ ସୋମବଂଶୀ ରାଜାମାନେ ଭୌମକର ମାନଙ୍କୁ ପରାସ୍ତ କରି ଏ ଅଞ୍ଚଳ ଦଖଲ କରି ଏହାର ଦାୟିତ୍ୱ ପ୍ରଥମେ ଶୁଳ୍କୀ ମାନଙ୍କୁ ଓ ପରେ କନ୍ଧ ଦଳପତି ଓ ଗଡ଼ନାୟକ ମାନଙ୍କୁ ଦେଇଥିଲେ । ଛଅଜଣ କନ୍ଧ ଦଳପତି ଯଥା : ୧ - ଇନ୍ଦ୍ର ଦଳପତି , ୨ - ରାମକିରା ଦଳପତି , ୩- ଗାଣ୍ଡିରା ଦଳପତି , ୪ - ପିନ୍ଦୁଡ଼ାବାଘୁରା ଦଳପତି , ୫- ଚିନ୍ନୁକୁଡୁ ଦଳପତି, ୬- ଅନୁବଳବନ୍ତରା ଦଳପତି । ଏହି ଦଳପତି ମାନଙ୍କ ମଧ୍ୟରୁ ଶେଷ

ଦଳପତି ଅନୁବଳବନ୍ତରା । ଅନୁ ଅତ୍ୟନ୍ତ ଅତ୍ୟାଚାରୀ, ପ୍ରଜାପୀଡ଼କ, ସ୍ବେଚ୍ଛାଚାରୀ ଏବଂ ମଦ୍ୟପଥିବାରୁ ତାଙ୍କ ଶାସନ କାଳରେ ପ୍ରଜାମାନେ ଅତି ଦୁଃଖ ଏବଂ ଅନୁଶୋଚନାରେ ସମୟ ଅତିବାହିତ କରୁଥିଲେ । ଦୈବେ ଏତିକିବେଳେ ଉତ୍ତରାପଥ ଅଞ୍ଚଳର ମଥୁରା ରାଜ୍ୟରୁ ଚାରିଜଣ କ୍ଷତ୍ରିୟ ରାଜପୁତ୍ର ସୁବୋଧଶୂର ସିଂହଙ୍କ ନେତୃତ୍ୱରେ ଜଗନ୍ନାଥ ଦର୍ଶନ କରିବାପାଇଁ ପୁରୀ ଆସିଥିଲେ । ସେମାନେ ସେମାନଙ୍କ ରହଣୀ କାଳରେ ଗଜପତି ନୃପକେଶରୀ ଙ୍କ ଠାରୁ ଅପୁବଳବନ୍ତରା ଙ୍କ ଅପକୀର୍ତ୍ତି କଥା ଶୁଣି ତାଙ୍କୁ ଶାସ୍ତି ବିଧାନ ପାଇଁ ପ୍ରସ୍ତାବ ଦିଅନ୍ତେ ଗଜପତି ଏ ପ୍ରସ୍ତାବକୁ ଅନୁମୋଦନ କଲେ । ଏହି ରାଜପୁତ୍ର ମାନେ ସେତେବେଳର ଅନୁଗୋଳର ରାଜନୈତିକ ଅବସ୍ଥା ବିଷୟରେ ଅବଗତି ଥିଲେ । ପ୍ରଶାସନରେ ଅନୁ ସପକ୍ଷରେ ଏବଂ ବିପକ୍ଷରେ ଦୁଇଟି ଗୋଷ୍ଠୀ ଥିଲେ । ଅନୁଗୋଳ ରାଜବଂଶାନୁ ମାଦଳା ଅନୁସାରେ ସୁବୋଧଶୂର ସିଂହ ଏବଂ ଅନ୍ୟ ରାଜପୁତ୍ର ମାନେ ଅନୁଙ୍କୁ ସଂପୂର୍ଣ୍ଣ ରୂପେ ପରାସ୍ତ କରି ଅନୁଗୋଳର ଶାସନ ଭାର ଗ୍ରହଣ କଲେ । ବ୍ରିଟିଶ ପ୍ରଶାସକ Mr. Lsso Melley 1908 ମସିହାରେ ତାଙ୍କ ସଙ୍କଳିତ Angul Gazetter ବିଷୟରେ ଯାହା ଲେଖିଛନ୍ତି ତାହା ନିମ୍ନରେ ଦିଆଗଲା :The Last Khond Sardar was a chieftain named Anu , who with held tribute and broke-out in rebbllion . A conspiracy was formed against Anu and in the Struggle which ensured. He was deposed by means of a gol i.e. battle or plot. They then ruled over the land and commemoration of their conquest called Anugol.

ସେହି ଦିନଠାରୁ ଅନୁ ରାଜ୍ୟପାଇଁ ଗୋଳ କରିଥିବାରୁ ଏହି ଉପଖଣ୍ଡର ନାମ ଅନୁଗୋଳ ହୋଇଅଛି ।

ଅନୁବଳବନ୍ତରାଙ୍କ ମୃତ୍ୟୁପରେ ଏହି ମଥୁରାଗତ ରାଜପୁତ୍ରମାନଙ୍କ ମଧ୍ୟରୁ ସୁବୋଧଶୂର ସିଂହ ଗଜପତି ମହାରାଜା ନୃପକେଶରୀଙ୍କ ଅନୁଜ୍ଞା ନେଇ ସୁବୋଧଶୂର କିଣା ନାମ ଧାରଣ ପୂର୍ବକ ୯୫୦ଖ୍ରୀଷ୍ଟାବ୍ଦରେ ଅନୁଗୋଳ ରାଜ୍ୟର ରାଜା ହେଲେ । ଏମାନେ ସୁରନାଗ କଦମ୍ବବଂଶୀ ରାଜବଂଶ ପ୍ରତିଷ୍ଠା କରିଥିଲେ । ଏହି ବଂଶରେ ୯ଜଣ ରାଜା ରାଜତ୍ୱ କରିଥିଲେ । ସେମାନେ ହେଲେ : ୧) ସୁବୋଧ ସିଂହ ଶୂର କିଣା, ୨) ରଣଜିତ ସିଂହ ଶୂରଜେନା , ୩) ଦୁର୍ଗାଚାରଣ ସିଂହ ଶୂରଜେନା , ୪) କନକ ସିଂହ ଶୂରଜେନା, ୫) ରାମଚନ୍ଦ୍ର ସିଂହ ଶୂରଜେନା, ୬) ନିତ୍ୟାନନ୍ଦ ସିଂହ ଶୂରଜେନା , ୭) କଣ୍ଠସିଂହ ଶୂରଜେନା , ୮) ବୃନ୍ଦାବନ ସିଂହ ଶୂରଜେନା, ୯)ଶିବରାମ ସିଂହ ଶୂରଜେନା ।

ଏମାନଙ୍କ ପରେ ମହାପାତ୍ର ସାମନ୍ତ ସିଂହାର ଓ ଚମ୍ପତି ଉପାଧିଧାରୀ କଦମ୍ବ ବଂଶୀୟ ରାଜା ଗଣ ୧୧୮୦ରୁ ୧୩୮୦ମସିହା ପର୍ଯ୍ୟନ୍ତ ଅନୁଗୋଳ ରାଜ୍ୟର ରାଜା ହେଲେ । ସେମାନେ ହେଲେ- ୧- ସଦାଶିବ ସିଂହ ମହାପାତ୍ର, ୨- ରାଘବ ସିଂହ ମହାପାତ୍ର, ୩- ଲୋକନାଥ ସିଂହ ସାମନ୍ତ ସିଂହାର, ୪- ଦୀନବନ୍ଧୁ ସିଂହ ସାମନ୍ତ ସିଂହାର୍, ୫- ଜଗବଂଧୁ ସିଂହ ସାମନ୍ତ ସିଂହାର, ୬- ଦୟାନିଧି ସିଂହ ଚମ୍ପେତି, ୭- ଦୈତ୍ୟାରୀ ସିଂହ ଚମ୍ପେତି , ୮- ଲାଉସିଂହ ଚମୁପତି , ୯- ସାଉଁଟି ସିଂହ ମହାପାତ୍ର । ଏମାନଙ୍କ

ପରେ ଶ୍ରୀ ଚନ୍ଦନ ଉପାଧିଧାରୀ କଦମ୍ବ ବଂଶୀୟ ରାଜାଗଣ ୧୩୮୦ରୁ ୧୬୧୧ ପର୍ଯ୍ୟନ୍ତ ୧୦ଜଣ ରାଜା ରାଜ୍ୟ ଶାସନ କରୁଥିଲେ। ସେମାନେ ହେଲେ, ୧- ମୁକୁନ୍ଦ ସିଂହ ହରି ଚନ୍ଦନ, ୨- ଗୋପୀନାଥ ସିଂହ ହରିଚନ୍ଦନ, ୩- ନୃସିଂହ ଚରଣ ସିଂହ ହରିଚନ୍ଦନ, ୪- ନାରାୟଣ ସିଂହ ହରିଚନ୍ଦନ, ୫- ପିତାମ୍ବର ସିଂହ ହରିଚନ୍ଦନ, ୬- ଶ୍ରୀପତି ସିଂହ ହରିଚନ୍ଦନ, ୭- ବନମାଳୀ ସିଂହ ହରିଚନ୍ଦନ, ୮- ପଳାଉ ସିଂହ ହରିଚନ୍ଦନ, ୯- ବଳରାମ ସିଂହ ହରିଚନ୍ଦନ, ୧୦- ଶ୍ୟାମସୁନ୍ଦର ସିଂହ ହରିଚନ୍ଦନ।

ଏମାନଙ୍କପରେ ଜଗଦେବ ଉପାଧିଧାରୀ କଦମ୍ବ ବଂଶୀୟ ରାଜାଗଣ ୧୬୧୧ରୁ ଅନୁଗୋଳରେ ଶାସନ କାର୍ଯ୍ୟ ସଂପାଦନା କରିଥିଲେ। ସେମାନେ ହେଲ ୧- ଚକ୍ରଧର ସିଂହ ନରେନ୍ଦ୍ର ଜଗଦେବ, ୨- ଲୋକନାଥ ସିଂହ ନରେନ୍ଦ୍ର ଜଗଦେବ, ୩- ଶିବ ଦାଶ ସିଂହ ନରେନ୍ଦ୍ର ଜଗଦେବ, ୪- ଭୀମଦାସ ସିଂହ ନରେନ୍ଦ୍ର ଜଗଦେବ, ୫- ଖୁଦେଇ ସିଂହ ନରେନ୍ଦ୍ର ଜଗଦେବ, ୬- ଧନୁର୍ଜ୍ଜୟ ସିଂହ ନରେନ୍ଦ୍ର ଜଗଦେବ, ୭- ନିତ୍ୟାନନ୍ଦ ସିଂହ ନରେନ୍ଦ୍ର ଜଗଦେବ , ୮- ଅଚଳ ମାନସିଂହ ନରେନ୍ଦ୍ର ଜଗଦେବ, ୯- ଜରାଓର ସିଂହ ନରେନ୍ଦ୍ର ଜଗଦେବ, ୧୦- ଜୟସିଂହ ନରେନ୍ଦ୍ର ଜଗଦେବ, ୧୧- ପୃଥ୍ୱୀକେଶର ସିଂହ ନରେନ୍ଦ୍ର ଜଗଦେବ, ୧୨- ସୋମନାଥ ସିଂହ ନରେନ୍ଦ୍ର ଜଗଦେବ।

ଶୂରନାଗ କଦମ୍ବ ବଂଶୀୟ ରାଜାମାନେ ଅନୁଗୋଳରେ ଦୀର୍ଘଦିନ ଧରି ରାଜତ୍ୱ କରିଥିଲେ। ଏହି ବଂଶୀୟ ଅଧିକାଂଶ ରାଜାମାନେ ପ୍ରଜାବତ୍ସଳ, ତେଜସ୍ୱୀ ଏବଂ ପ୍ରତିଷ୍ଠାବାନ ରାଜା ଥିଲେ। ତେଣୁ ପ୍ରାୟତଃ ଅଧିକାଂଶ ପ୍ରଜା ତାଙ୍କ ରାଜାଙ୍କୁ ଭକ୍ତି ଓ ଶ୍ରଦ୍ଧା କରୁଥିଲେ। ସୋମନାଥ ସିଂହ ଜଗଦେବ ଅନୁଗୋଳର କାହିଁକି ଭାରତର ଶ୍ରେଷ୍ଠ ସ୍ୱାଧୀନ ରାଜା ଥିଲେ। ସେଥିଲେ ଅତ୍ୟନ୍ତ ସ୍ୱାଧୀନଚେତା, ସ୍ୱାଭିମାନୀ, ତେଜସ୍ୱୀ, ଶୌର୍ଯ୍ୟବାନ୍, ଗୁଣୀ, ଗୁଣଗ୍ରାହୀ , ପ୍ରଜାବତ୍ସଳ ସୁଶାସକ, କରୁଣାର ଅବତାର ଓ ଶରଣ ପଞ୍ଜର। ସେ ନିଜର ଦକ୍ଷତା ବଳରେ ପ୍ରଥମ ପର୍ଯ୍ୟାୟରେ ବହୁ ପ୍ରଶଂସନୀୟ କାର୍ଯ୍ୟକରି ଇଂରେଜ ସରକାରଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ ଏବଂ ପୁରସ୍କୃତ ହୋଇଥିଲେ। କିନ୍ତୁ ସେତେବେଳର ରାଜନୈତିକ ପରିସ୍ଥିତି ସୋମନାଥଙ୍କ ଭାଗ୍ୟଚକ୍ରରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ଆଣିଥିଲା। ଇଂରେଜ ସରକାର ସାରା ଭାରତରେ ନିଜର ଆସନ ସୁଦୃଢ଼ କରିଥିଲେ। ମରହଟ୍ଟା ମାନଙ୍କୁ ଏବଂ ଟିପୁ ସୁଲତାନଙ୍କୁ ପରାସ୍ତ କଲାପରେ ସେମାନେ ସ୍ୱେଚ୍ଛାଚାରୀ ଏବଂ ଏକଛତ୍ରବାଦୀ ହୋଇପଡ଼ିଥିଲେ। ୧୮୦୩ ମସିହାରେ ଇଂରେଜମାନେ ମରହଟ୍ଟା ମାନଙ୍କୁ ପରାସ୍ତକରି ମୋଗଲ ଓଡ଼ିଶାର ଶାସନ ଭାର ଗ୍ରହଣ କଲେ ଏବଂ ଅନ୍ୟଗଡ଼ଜାତ ଉପରେ ତାଙ୍କର ଲୋଲୁପଦୃଷ୍ଟି ପଡ଼ିଥିଲା। ଏହି ସମୟରେ ବକ୍ସି ଜଗବଂଧୁ ବିଦ୍ୟାଧର ଏବଂ ବୀର ସୁରେନ୍ଦ୍ର ସାଏ ଆନ୍ଦୋଳନ କରିଥିଲେ। ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଦମନ ଏବଂ ପଶ୍ଚିମ ଓଡ଼ିଶାକୁ ଦଖଲ କରିବା ଇଂରେଜ ମାନଙ୍କର ଏକମାତ୍ର ଲକ୍ଷ୍ୟ ଥିଲା। ଅନୁଗୋଳ, ପଶ୍ଚିମ ଓଡ଼ିଶା ଏବଂ ଉପକୂଳବର୍ତ୍ତୀ ଓଡ଼ିଶାର ମଧ୍ୟବର୍ତ୍ତୀ ଅଞ୍ଚଳ ହୋଇଥିବାରୁ ଏହି ରାଜ୍ୟ ଉପରେ ଇଂରେଜ ମାନଙ୍କର ତିକ୍ଷଣ ଦୃଷ୍ଟି ପଡ଼ିଥିଲା । ସୋମନାଥ ସିଂହ ଜଣେ ସ୍ୱାଧୀନ ଚେତା ସ୍ୱାଭିମାନୀ ହୋଇ ଥିବାରୁ

ଇଂରେଜମାନଙ୍କ ପ୍ରତ୍ୟେକ କଥାରେ ହଁ ମାରି ପାରିନଥିଲେ । ତେଣୁ ଇଂରେଜ ଏବଂ ସୋମନାଥଙ୍କ ମଧ୍ୟରେ ଅବିଶ୍ୱାସର ରେଖାପାତ ହୋଇଥିଲା । ଏଣୁ ଇଂରେଜ ମାନେ ସୁଯୋଗର ଅପେକ୍ଷାରେ ରହିଥିଲେ । ସୋମନାଥ ଇଂରେଜମାନଙ୍କର ଏ ପ୍ରକାର ମନୋବୃତ୍ତିର ଆଭାସ ପାଇ ତାଙ୍କର ରାଜଧାନୀ ଅନୁଗୋଳ ଗଡ଼ରୁ (ବର୍ତ୍ତମାନର ପୁରୁଣାଗଡ଼) ପାହାଡ଼ ପର୍ବତ ଘେରା ବନୋର ପର୍ବତର ମଧ୍ୟ ସ୍ଥଳିରେ ଏକ ଗୁପ୍ତ ଗଡ଼ ନିର୍ମାଣ କରିଥିଲେ । ଏହାର ନାମ କୃଷ୍ଣଚନ୍ଦ୍ରଗଡ଼ ରଖିଥିଲେ । ଭବିଷ୍ୟତରେ ଇଂରେଜ ମାନଙ୍କ ସହିତ ଯୁଦ୍ଧହେଲେ ଏଠାରେ ରହି ଯୁଦ୍ଧକରି ଇଂରେଜମାନଙ୍କୁ ପରାସ୍ତ କରିବାର ପରିକଳ୍ପନାକରିଥିଲେ । ସୋମନାଥ ସଂପୂର୍ଣ୍ଣ ଦୋଷମୁକ୍ତ ଥିଲେ ମଧ୍ୟ, ତାଙ୍କୁ କେତେକ ଆରୋପ ଯଥା : ବୈଦ କୁପଙ୍ଗଗଡ଼ ଆକ୍ରମଣ, ହିନ୍ଦୋଳର କୁରୁମିଠା ଦଖଲ, ନବଘନ କହଁର ଏବଂ ଚକରା ବିଶୋଇଙ୍କ ପରି ସ୍ୱାଧୀନତା ସଂଗ୍ରାମୀ ମାନଙ୍କୁ ନିଜ ରାଜ୍ୟରେ ଆଶ୍ରୟ, ପଶ୍ଚିମା ଯାତ୍ରୀ ହଣା, କତୁରୀ ମାରଡ଼ା ଅତ୍ୟାଚାର ଆଦି ଅଭିଯୋଗ ରୁଜୁ କରାଯାଇ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ତାଙ୍କ ବିରୁଦ୍ଧରେ କ୍ୟାପ୍ଟେନ୍ କ୍ୟାମ୍ପବେଲଙ୍କ ନେତୃତ୍ୱରେ Angul Field Force ଏକ ବିରାଟ ସୈନ୍ୟବାହିନୀ ଗଠନକରାଗଲା ଏବଂ ତାଙ୍କୁ ଗାଦିଚ୍ୟୁତ କରିବା ପାଇଁ ପଠାଗଲା । ସେ ସମୟରେ ସୋମନାଥ ସିଂହ ଜଗଦେବ ବାତ ରୋଗରେ ପୀଡ଼ିତ ହୋଇ ରୋଗ ଶଯ୍ୟାରେ ପଡ଼ିଥିଲେ । ସେତେବେଳକୁ ଅନୁଗୋଳର ଆଭ୍ୟନ୍ତରୀଣ ଅବସ୍ଥା ସେତେ ଭଲ ନଥିଲା । ରାଜାଙ୍କୁ ନେଇ, ରାଜା ସପକ୍ଷରେ ଏବଂ ବିପକ୍ଷରେ ଦୁଇଟି ଗୋଷ୍ଠୀ କାର୍ଯ୍ୟ କରୁଥିଲା । ରାଜାଙ୍କର ସେତେବେଳର ଦିୱାନ କମଳ ଲୋଚନ ପଟ୍ଟନାୟକ ଓ ଅନ୍ୟମାନେ ଚପଳ ମତି ଅନୁଗୋଳ ଯୁବରାଜ ଲୋକନାଥ ସିଂହ ଗମ୍ଭୀର ସାମନ୍ତଙ୍କୁ ରାଜ୍ୟପାଇଁ ପ୍ରଲୋଭିତ କରି ରାଜାଙ୍କ ବିରୁଦ୍ଧରେ ଯିବାପାଇଁ ପ୍ରବର୍ତ୍ତାଇ ଥିଲେ । ସେତେବେଳର ଅନୁଗୋଳ ରାଜ୍ୟର ଆଭ୍ୟନ୍ତରୀଣ ଅବସ୍ଥା ଏବଂ ବାହ୍ୟ ରାଜନୈତିକ ପରିସ୍ଥିତିର ପ୍ରଭାବ ଚପଳମତି ଲୋକନାଥଙ୍କ ଉପରେ ପଡ଼ିଥିଲା । କାଳେ ଇଂରେଜମାନେ ପିତାଙ୍କ ବଦଳରେ ତାଙ୍କୁ ଜଗଦେବ ଉପାଧି ଦେଇ ଅନୁଗୋଳ ରାଜ ସିଂହାସନରେ ଅଧିଷ୍ଠିତ କରିବେ, ସେଥିପାଇଁ ବୋଧେ ସେ ରାଜାଙ୍କ ବିରୁଦ୍ଧ ଗୋଷ୍ଠୀରେ ଯୋଗ ଦେଇଥିଲେ । ତେଣୁ ମୁଁ ଭାବୁଛି ଏ ପରିସ୍ଥିତି ପାଇଁ ଲୋକନାଥ ସିଂହ ଯେତିକି ନୁହନ୍ତି, ସେତିକି ଦାୟୀ ସେତେବେଳର ସମୟ ଏବଂ ଅନୁଗୋଳ ବିରୋଧୀ ନିମକହରାମ ଦଲାଲ ମାନଙ୍କ ଚକ୍ରାନ୍ତ । ଇଂରେଜ ଏବଂ ସୋମନାଥ ସିଂହଙ୍କ ଭିତରେ ହୋଇଥିବା ଯୁଦ୍ଧରେ ସୋମନାଥ ସିଂହ ଅସୀମ ବୀରତ୍ୱର ପରାକାଷ୍ଠା ଦେଖାଇ ଅନୁଗୋଳର ସ୍ୱାଧୀନତା ପାଇଁ ଏହି ମହାନ୍ ସ୍ୱାଧୀନତା ସଂଗ୍ରାମୀ ଜୀବନ ଦେଇଦେଲେ ସିନା ବଶ୍ୟତା ସ୍ୱୀକାର କରିନଥିଲେ । ୧୮୪୮ ମସିହାରେ ସେ ଧରାହୋଇ ପ୍ରଥମେ କଟକରେ ଏବଂ ପରେ ହଜାରୀବାଗ ଜେଲରେ ବନ୍ଦୀ ଜୀବନ କଟାଇ ୨/୬/୧୯୫୩ ମସିହାରେ ଇହଲୀଳା ସମ୍ବରଣ କଲେ । ତାଙ୍କ ମୃତ୍ୟୁ ଫଳରେ ଅନୁଗୋଳର ଅପୂରଣୀୟ କ୍ଷତି ହେବା ସଂଗେ ସଂଗେ ଅନୁଗୋଳ ଜନନୀ, ସୋମନାଥ ସିଂହଙ୍କ ପରି ଜଣେ ସ୍ୱାଧୀନଚେତା ପ୍ରଜା ବତ୍ସଳ ଏବଂବୀର ସନ୍ତାନକୁ ହରାଇଲା ।

ସୋମନାଥ ସିଂହ ଜଗଦେବଙ୍କ ମୃତ୍ୟୁ ପରେ ଗମ୍ଭୀର ସାମନ୍ତ ଲୋକନାଥ ସିଂହ ବ୍ରିଟିଶ ସରକାରଙ୍କ ନିକଟରେ ରାଜ୍ୟ ପାଇଁ ଏବଂ ଜଗଦେବ ଉପାଧି ପାଇଁ ଅର୍ଜୀ କଲେ କିନ୍ତୁ ପରିତାପର ବିଷୟ ରାଜ୍ୟ ତ ମିଳିଲା ନାହିଁ, ତତ୍ ସଂଗେ ସଂଗେ ତାଙ୍କୁ ଅନୁଗୋଳରେ ରହିବା ପାଇଁ ଅନୁମତି ଦିଆଗଲା ନାହିଁ । ଲୋକନାଥ ସିଂହ ଦୁଃଖ ଓ ଅନୁତାପରେ ନିଜର ଶେଷ ଜୀବନ, ପୁରୀ ଦୈତାପଡ଼ା କୋଠୀରେ କଟାଇଥିଲେ । ସେ ଅପୁତ୍ରିକ ଥିବାରୁ ବୀରବର ମାଗୁଣି ସିଂହଙ୍କୁ ପୋଷ୍ୟପୁତ୍ର କରିଥିଲେ । ବୀରବର ମାଗୁଣି ସିଂହ ଅନୁଗୋଳର ବାଲୁଅକଟା ଠାରେ ଅବସ୍ଥାନ କରୁଥିଲେ । ସୋମନାଥସିଂହ ଜଗଦେବଙ୍କ ପରେ ଅନୁଗୋଳ ରାଜବଂଶର ବଂଶାବଳୀ ତାଲିକା ନିମ୍ନରେ ଦିଆଗଲା । ୧ - ଲୋକନାଥ ସିଂହ, ୨- ମାଗୁଣି ସିଂହ, ୩- ବୀରଶୂରପ୍ରତାପ ସିଂହ, ୪- ବୀରକିଶୋର ଶ୍ରୀ ବ୍ରଜମୋନହ ସିଂହ, ୫- ରୁଦ୍ରନାରାୟଣ ସିଂହ । ମହାରାଜା ସୋମନାଥ ସିଂହ ଜଗଦେବଙ୍କର ବଂଶଧର ଶ୍ରୀ ରୁଦ୍ରନାରାୟଣ ସିଂହ ବର୍ତ୍ତମାନ ଅନୁଗୋଳର ବାଲୁଅକଟା ଗ୍ରାମରେ ଅବସ୍ଥାନ କରୁଛନ୍ତି ।

ଅନୁଗୋଳ ରାଜ୍ୟ ଦଖଲ କଲାପରେ ଇଂରେଜ ମାନେ କ୍ରୋଧାନ୍ୱିତ ହୋଇ ରାଜମହଲ, ଦୁର୍ଗ ସମୁହ ଓ ଅନ୍ୟାନ୍ୟ ରାଜକୀର୍ତ୍ତି ସମୂଳେ ଧ୍ୱଂସ କରି ଦେଇଥିଲେ । ଏହାର ଉଦେଶ୍ୟ ଅନୁଗୋଳ ଜନସାଧାରଣ ଆଉ କିପରି ଏହାର ପୂର୍ବ ଇତିହାସ ମନେ ନପକାଇ ଇଂରେଜ ଶାସନାଧୀନ ହୋଇ ସବୁଦିନେ ରହିଯାଉ ।

**ସହାୟକ ପୁସ୍ତକ ସମୁହ ଓ ଲେଖକ :**

୧- Calcutta Review

୨- ବୁଢ଼ାପଙ୍କ ଯୁଦ୍ଧ ପୋଥି, ଅନୁଗୋଳ ସମର - କବିଚନ୍ଦ୍ର ନୃସିଂହ ରାଜଗୁରୁ

୩- କୃଷ୍ଣଚକ୍ର ଗଡ଼ - କବିଚନ୍ଦ୍ର ଗୋବିନ୍ଦ ରାଜଗୁରୁ

୪- ଅନୁଗୋଳ ଇତିହାସ - ଗୋବିନ୍ଦ ରାଜଗୁରୁ

୫- ଅନୁଗୋଳ ନାମର ଐତିହାସିକତା - ଶ୍ରୀମତୀ ସ୍ନେହମୟୀ ସାହୁ

୬- ଅନୁଗୋଳ - ପଦ୍ମଶ୍ରୀ ରାଧାମୋହନ ଗଡ଼ନାୟକ

୭- ଓଡ଼ିଶା ଇତିହାସ - ଡ଼କ୍ଟର ହରେକୃଷ୍ଣ ମହତାପ

୮ - Angul Gazetter - Mr. Lsso Melley

୯- ଅନୁଗୋଳର ଭୂଗୋଳ ଓ ଇତିହାସ - ଭଗବାନ ଚନ୍ଦ୍ର ଦାଶ

୧୦-ଅନୁଗୋଳ ଇତିହାସ - ଶତ୍ରୁଘ୍ନ ମିଶ୍ର

୧୧- ଭାରତର ଶେଷ ସ୍ୱାଧୀନ ନରପତି - ରାଜା ସୋମନାଥ ସିଂହ ଜଗଦେବ - ଡ଼ଃ. ବିପିନ ବିହାରୀ ସାହୁ

୧୨- ସୋମନାଥ ସିଂହ ଜଗଦେବ - ସୁଧାକର ପଟ୍ଟନାୟକ, ସଂକଳିତ ।



# ରାଜ ଚକ୍ରବର୍ତ୍ତୀ ବୀର ସୋମନାଥ ସିଂହ ଜଗଦେବ

ତ୍ରେତାନନ୍ଦ ସାମନ୍ତ
ସାମନ୍ତ ବିହାର, ରାଣୀଗୋଡ଼ା, ଅନୁଗୋଳ, ଓଡ଼ିଶା

ଇଂରେଜ ବିରୋଧୀ ସଂଗ୍ରାମରେ ଝାସ ଦେଇ ରାଜା ସୋମନାଥ ହେଉଛନ୍ତି ଏକମାତ୍ର ବୀର ସନ୍ତାନ ଯେ ୧୮୪୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଅନୁଗୁଳ ଅଞ୍ଚଳରେ ଗୋରା ବିରୋଧୀ ଆନ୍ଦୋଳନକୁ ଜୀବିତ କରି ପାରିଥିଲେ। ୧୮୨୫ ଖ୍ରୀଷ୍ଟାବ୍ଦଠାରୁ ଇଂରେଜ ମାନେ ଗଡ଼ଜାତ ଶାସନ ଉପରେ କ୍ରମଶଃ ହସ୍ତକ୍ଷେପ କରିବାକୁ ଲାଗିଲେ। କିନ୍ତୁ କ୍ଷୁଦ୍ର ଅନୁଗୁଳ ରାଜ୍ୟରେ ରାଜା ସୋମନାଥ ସିଂହ ଜଗଦେବ ଏହାକୁ ସହ୍ୟ କଲେ ନାହିଁ। ଏଠାରୁ ଇଂରେଜ ଓ ଅନୁଗୋଳ ରାଜା ଙ୍କ ମଧ୍ୟରେ ଏଠାରୁ ମନାନ୍ତର ସୃଷ୍ଟି ହେଲା। ସରକାର ନିଜ ଅଧୀନକୁ ଆସିଥିବା ଅଞ୍ଚଳମାନଙ୍କରୁ ଯୁଦ୍ଧ ଉପକରଣ ଏବଂ ସୈନ୍ୟସାମନ୍ତ ଅନୁଗୋଳକୁ ସ୍ଥାନାନ୍ତର କରି ସୋମନାଥଙ୍କୁ ଧରିବା କାର୍ଯ୍ୟରେ ଲାଗି ପଡ଼ିଲେ।

କିଛି ଅନ୍ତରଙ୍ଗଙ୍କ ବିଶ୍ୱାସଘାତକତା ଦ୍ୱାରା ଏହି ବୀର ପୁରୁଷଙ୍କୁ ୧୮୪୮ ଖ୍ରୀଷ୍ଟାବ୍ଦ ଫେବୃୟାରୀ ମାସ ଏକ ତାରିଖ ଦିନ ସୁରକ୍ଷିତ କୃଷ୍ଣ ଚକ୍ର ଗଡ଼ ଠାରେ ଧରାଇ ଦେଇ ନଥିଲେ ଆହୁରି କେତେ ଦିନ ପର୍ଯ୍ୟନ୍ତ ଅନୁଗୁଳ ଅଞ୍ଚଳରେ ଇଂରେଜ ବିରୋଧୀ ଆନ୍ଦୋଳନ ଅଭିଯାନ ଚାଲୁ ରହିଥାନ୍ତା, ତାହା କଳ୍ପନା କରି ହୋଇନଥାନ୍ତା।

ରାଜା ସୋମନାଥଙ୍କର ରାଜଗାଦି ଅଭିଳାଷ ନଥିଲା। ସେ ହକ୍‌ଦାର ହିସାବରେ ତା୩/୧୦/୧୮୧୪ ଖ୍ରୀଷ୍ଟାବ୍ଦରେ ୧୪ ବର୍ଷ ବୟସରେ ସିଂହାସନ ଆରୋହଣ କରିଥିଲେ। ଏହାଥିଲା ତାଙ୍କର ଗୌଣ କର୍ମ, କିନ୍ତୁ ମୁଖ୍ୟ କର୍ମ ଥିଲା ଗୋରା ଶାସକଙ୍କୁ ଦେଶରୁ ହଟାଇ ନିଜ ରାଜ୍ୟକୁ ନିଜ ଅକ୍ତିଆରରେ ରଖିବା। ରାଜା ହିସାବରେ ତାଙ୍କର କୌଣସି ବିଷୟରେ ଅଭାବ ନଥିଲା। ଯଦି ରାଜା ସୋମନାଥ ଅପୁତ୍ରିକ ହୋଇଥାନ୍ତେ ଅବା ଅନ୍ତରଙ୍ଗ ମାନଙ୍କର ବିଶ୍ୱାସଘାତକତା ହୋଇ ନଥାନ୍ତା ତେବେ ମଧ୍ୟ ରାଜା ସୋମନାଥ ନିଜ ଜନ୍ମଭୂମିକୁ ଇଂରେଜମାନଙ୍କ ହାତକୁ ଟେକି ଦେଇ ନଥାନ୍ତେ। ସେ ସମୟରେ ସୋମନାଥଙ୍କ ଜୀବନୀ ଉପରେ କୌଣସି ତଥ୍ୟ ଇତିହାସ ପୃଷ୍ଠାରେ ସ୍ଥାନ ପାଇ ପାରିନଥିଲା କିମ୍ବା ତାଙ୍କ ବିଷୟରେ କୌଣସି ସଭା ସମିତିରେ ଚର୍ଚ୍ଚା ହୋଇନଥିଲା। ଦେଶ ସ୍ୱାଧୀନତା ପ୍ରାପ୍ତି କରିବା ଦିଗରେ ପଥ ପ୍ରଦର୍ଶକ ହିସାବରେ ତାଙ୍କର ଅତୁଳନୀୟ କାହାଣୀ ଅନୁଗୁଳ ପରି ସେ ସମୟରେ ଏକ ରାଜ୍ୟ ଥିଲା ବୋଲି ଇଂରେଜମାନଙ୍କ ଦୃଷ୍ଟିରେ ପଡ଼ି ନଥାନ୍ତା। ଗୋରା ସରକାର ଏହି ବୀର ସନ୍ତାନଙ୍କୁ ପ୍ରାଣରେ ଡରୁଥିଲା। ୧୮୨୫ ଖ୍ରୀଷ୍ଟାବ୍ଦରୁ ଏହି ଶ୍ରେଷ୍ଠ ବିପ୍ଳବୀ ପୁରୁଷ ଅନୁଗୁଳ ଅଞ୍ଚଳରୁ ଇଂରେଜ ଶାସକଙ୍କୁ ନିପାତ କରିବା ପାଇଁ ତାଙ୍କର ସମର ପରାମର୍ଶଦାତା ଦରବାରୀୟ ରାଜଗୁରୁ ସମର ବିଶାରଦ ମହାମନ୍ତ୍ରୀ ନୃସିଂହ ରାଜଗୁରୁ ଓ ପ୍ରଧାନ ପାତ୍ର ସିନ୍ଧୁ ଗଡ଼ନାୟକ ଏବଂ ସର୍ଦ୍ଦାର ପରମାନନ୍ଦ ଚମ୍ପତିରାୟଙ୍କ ସହ ସୈନ୍ୟସାମନ୍ତଙ୍କୁ ଲଗାଇଥିଲେ। ଏହା ରାଜା ସୋମନାଥଙ୍କର ପ୍ରକୃତ ବ୍ୟକ୍ତିତ୍ୱ ଏବଂ ସାହାସର ନିଦର୍ଶନ। ରାଜା ସୋମନାଥ ହେଉଛନ୍ତି କଦମ୍ବ ବଂଶୀୟ ରାଜା, ସେ ଅନୁଗୁଳର ଆଉ ଜଣେ ବୀର

ହିନ୍ଦୁ ଏବଂ ସ୍ୱାଧୀନ ଚେତା ରାଜ ଭାଟା ଗୋପିନାଥ ସିଂହଙ୍କ ପୁତ୍ର ।

ଅନୁଗୁଳର ଜନସାଧାରଣ ଇଂରେଜମାନଙ୍କୁ ଚାହୁଁନଥିଲେ । ସେମାନେ ରାଜାଙ୍କର ଅତ୍ୟନ୍ତ ଅନୁଗତ ଥିଲେ । ରାଜା ସୋମନାଥ ନିଜ ରାଜବଂଶର ଇଷ୍ଟଦେବୀ "ମା କଳାପାଟ"ଙ୍କ ପ୍ରତି ଏକାନ୍ତ ଆସ୍ଥା ପ୍ରକଟ କରିଥିଲେ ଏବଂ ଦୁଇ ସେନାପତିଙ୍କ ଦୈବୀଶକ୍ତି ବଳରେ ଇଂରେଜ ସରକାରଙ୍କ ଆସନ ଟଳମଳ କରି ଦେଇଥିଲେ । ଯଦି ବ୍ରିଟିଶ ସରକାର ତାଙ୍କୁ କପଟ କୌଶଳରେ ଧରି ନଥାନ୍ତେ, ତେବେ ରାଜା ସୋମନାଥ ଆମରଣ ସ୍ୱାଧୀନତା ସମର ଚଳାଇଥାନ୍ତେ ଏଥିରେ ସନ୍ଦେହର ଅବକାଶ ଟିକିଏ ମାତ୍ର ନଥିଲା ।

ରାଜା ସୋମନାଥ ସିଂହଙ୍କ ଆବିର୍ଭାବ ସମୟରେ ଅନୁଗୁଳ ଏକ ସ୍ୱତନ୍ତ୍ର ରାଜ୍ୟ ଭାବରେ ଗଣା ଯାଉଥିଲା । ରାଜା ସୋମନାଥ ସିଂହ ନିଜର ଅନୁଗତ ଏବଂ କୁଳାଙ୍ଗାର ପୁତ୍ର ଲୋକନାଥ ଗମ୍ଭୀର ସାମନ୍ତଙ୍କ କପଟ କୌଶଳରେ ଧରାହେଲେ ଏବଂ ପ୍ରଥମେ କଟକ ଜେଲ୍‌ରେ ଏବଂ ପରେ ହଜାରୀବାଗ ଜେଲ୍‌କୁ ପ୍ରେରିତ ହୋଇଥିଲେ । ସେଠାରେ ନାନା ନିର୍ଯ୍ୟାତନା ମଧ୍ୟରେ ପରିଶେଷରେ ତା ୨/୬/୧୮୫୩ ମସିହାରେ ତାଙ୍କର ଜୀବନ ନିର୍ବାପିତ ହେଲା । ତାଙ୍କ ମୃତ୍ୟୁବେଳକୁ ଆମ ଦେଶ ବ୍ରିଟିଶ୍ ଶାସନରୁ ମୁକ୍ତ ହୋଇ ପାରିନଥିଲା ଏବଂ ସବୁ ରାଜ୍ୟ ୨୦୦ ବର୍ଷରୁ ଅଧିକ ପରାଧୀନ ଥିବାବେଳେ ଆମ ରାଜ୍ୟ ଅନୁଗୁଳ ରାଜା ସୋମନାଥଙ୍କ ପାଇଁ ମାତ୍ର ୯୯ ବର୍ଷ ପରାଧୀନ ଥିଲା ।







# କୃଷ୍ଣଚକ୍ର ଗଡ଼ର ସୁରକ୍ଷା ଓ ବିକାଶ

ମାନନୀୟ,

ଜିଲ୍ଲାପାଳ ଅନୁଗୋଳ ମହୋଦୟ - -ସମୀପେଷୁ ।

(କୃଷ୍ଣଚକ୍ରଗଡ଼ ପ୍ରତି ସରକାର ଦୃଷ୍ଟି ଦିଅନ୍ତୁ ।)

ବରେଣ୍ୟ ମହାଶୟ,

ଭାରତର ଶେଷ ସ୍ୱାଧୀନ ରାଜା- ମହାରାଜା ସୋମନାଥ ସିଂହ ଜଗଦେବ ଦେଶ ମାତୃକା ପାଇଁ ୧୮୫୩ଜୁନ୍ ଦୁଇତାରିଖରେ ବିହାରର ହଜାରିବାଗ ଜେଲ୍ ରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସ୍ନ ୧୮୪୮ରେ ଇଂରେଜ ସରକାର ନାନା ମିଥ୍ୟା ଅଭିଯୋଗ ଏବଂ ପୂର୍ବପ୍ରସ୍ତୁତି କୁଚକ୍ରାନ୍ତକୁ ଭିତ୍ତିକରି ତାଙ୍କୁ କୃଷ୍ଣଚକ୍ର ଗଡ଼ ରାଜବାଟୀରୁ ବନ୍ଦୀକଲେ । ଏହା ଅନୁଗୋଳ ଇତିହାସର ଏକ ଅବିସ୍ମରଣୀୟ ଅଶ୍ରୁଳ ଘଟଣା । ଗୋରା ସରକାର ଅନୁଗୋଳକୁ ଦୀର୍ଘ ୯୯ବର୍ଷ ଶାସନ କଲେ ଏବଂ ସେ ସମୟଭିତରେ ମହାରାଜାଙ୍କର ପୁରୁଣାଗଡ଼ ରେ ଥିବା ପ୍ରଥମ ରାଜବାଟୀ ଓ କୃଷ୍ଣଚକ୍ର ଗଡ଼ ଶେଷ ରାଜବାଟୀକୁ ସଂପୂର୍ଣ୍ଣ ଧ୍ୱଂସ କରି ମାଟିରେ ମିଶାଇ ଦେଇ ସେଠାରେ ଥିବା ସମସ୍ତ ମୂଲ୍ୟବାନ୍ ସଂପତ୍ତି ନେଇ ଚାଲିଗଲେ । ବର୍ତ୍ତମାନ ସେ କୃଷ୍ଣଚକ୍ରଗଡ଼ ଓଡ଼ିଶା ସରକାରଙ୍କ ଜଙ୍ଗଲ ବିଭାଗ ଦାୟିତ୍ୱରେ ରହି ସଂପୂର୍ଣ୍ଣ ଅବହେଳିତ । ଏଇଠି ଆପଣଙ୍କ ଗୋଚରାର୍ଥେ ଜଣାଇ ଦେବାକୁ ଉଚିତ ମନେକରୁ ମହାରାଜାଙ୍କର କଟକ ତୁଳସୀପୁରରେ ଥିବା ବଙ୍ଗଳା ସହିତ ପାଞ୍ଚ ଏକର ଜାଗା ବ୍ରିଟିଶ ମାନେ ତାଙ୍କ ଅଧୀନରେ ସେତେବେଳେ କାର୍ଯ୍ୟ କରୁଥିବା ଜଣେ କିରାଣୀଙ୍କୁ ଲିଜ୍ ଦେଇଦେଲେ । ଏହା ବ୍ରିଟିଶ ମାନଙ୍କର ଅନୁଗୋଳ ରାଜା ଓ ଜନସାଧାରଣଙ୍କ ପ୍ରତି ଅତି ନିମ୍ନମାନର ବିଚାର ଧାରାର ପରିଚୟ ଦିଏ ।

.....ବର୍ତ୍ତମାନ କୃଷ୍ଣଚକ୍ର ଗଡ଼ (ଅନୁଗୋଳଠାରୁ ୨୨କି.ମି. )ଜଙ୍ଗଲ ବିଭାଗ ହାତରେ ରହି ଅସୁରକ୍ଷିତ । ଗତ ତା.୧୮.୦୫.୨୦୦୮ ରେ ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତିକମିଟି ତାର ସମସ୍ତ ସଦସ୍ୟଙ୍କୁ ନେଇ କୃଷ୍ଣଚକ୍ର ଗଡ଼ର କୁଲୁସର ବିଦ୍ୟାଳୟ ପ୍ରାଙ୍ଗଣରେ ଏକ ବିରାଟ ଜନସମାବେଶର ଆୟୋଜନ କରିଥିଲା । ସେଥିରେ ଦଶଟି ଗ୍ରାମର ପ୍ରାୟ ଏକ ହଜାର ପାଞ୍ଚଶହ ଗ୍ରାମବାସୀ ସକ୍ରିୟ ଅଂଶ ଗ୍ରହଣ କରି ମହାରାଜାଙ୍କ ରାଜକବି ପଣ୍ଡିତ କବିଚନ୍ଦ୍ର ଲାଟ୍ ନୃସିଂହ ରାଜ ଗୁରୁଙ୍କ କାବ୍ୟକୃତି ଉପରେ ଆଲୋକପାତ କରିବା ସଂଗେ ସଂଗେ ସ୍ଥାନୀୟ ଅଞ୍ଚଳର ନାନାଦି ଅଭାବ ଅସୁବିଧା ତଥା କୃଷ୍ଣଚକ୍ର ଗଡ଼ର ସୁରକ୍ଷା ନିମିତ୍ତ ସ୍ମୃତିକମିଟି ଆଗରେ ନିମ୍ନଲିଖିତ ପ୍ରସ୍ତାବ ଗୁଡ଼ିକ ପ୍ରଦାନ କରିଥିଲେ ।

ପ୍ରସ୍ତାବ :

୧- ଅନୁଗୋଳ ଜିଲ୍ଲାପାଳଙ୍କୁ ଜଣାଇ ଓଡ଼ିଶା ସରକାରଙ୍କ ଦୃଷ୍ଟି ଆକର୍ଷଣ ଏବଂ ତୁରନ୍ତ ପଦକ୍ଷେପ ନିମିତ୍ତ ଯତ୍ନଶୀଳ ହେବା ।

୨- କୃଷ୍ଣଚକ୍ରଗଡ଼ (ପୁରୁଣା ରାଜବାଟିକୁ ଗୋଟିଏ ପର୍ଯ୍ୟଟନ କ୍ଷେତ୍ର ରୂପେ ଘୋଷଣା କରି ତାହାର ଚାରିସୀମା ଜବରଦଖଲକାରୀଙ୍କ କବଳରୁ ମୁକ୍ତି କରିବା )

୩- ସଂପୂର୍ଣ୍ଣ ନଷ୍ଟ ହୋଇଯାଉଥିବା ଜଙ୍ଗଲ ସଂପଦର ରକ୍ଷଣା ବେକ୍ଷଣ ଏବଂ ନୂତନ ଜଙ୍ଗଲ ସୃଷ୍ଟି କରାଇବା ।

୪- ଏ ପର୍ଯ୍ୟନ୍ତ ଏ ଅଞ୍ଚଳବାସୀ ଦାରିଦ୍ର୍ୟର ସୀମାରେଖା ତଳେ ରହି ବର୍ଷର ଅର୍ଦ୍ଧାଧିକ ସମୟ ଅର୍ଦ୍ଧାହାର ଓ ଉପବାସରେ ସମୟ ବିତାନ୍ତି ।

୫- ପାଖ ଗାଁ ମାନଙ୍କରେ ବାର୍ଷିକ ମାତ୍ର ପାଞ୍ଚହଜାର ଟଙ୍କା ମଜୁରୀରେ ଘରୋଇ ଚାକର ରହି ପୁରୁଷାନୁକ୍ରମେ ଅତ୍ୟନ୍ତ ଦୀନହୀନ ଅବସ୍ଥାରେ କାଳାତିପାତ କରନ୍ତି ।

୬- ଦେଶ ସ୍ୱାଧୀନ ହେବାର ଦୀର୍ଘବର୍ଷ ବିତିଯାଇଥିଲେ ମଧ୍ୟ ଗମନାଗମନର ରାସ୍ତା ଅତ୍ୟନ୍ତ ଶୋଚନୀୟ ।

୭- ବିଜୁଳି ବ୍ୟବସ୍ଥା ଓ ଚିକିତ୍ସାର କୌଣସି ସୁବିଧା ନାହିଁ ।

୮- କୃଷ୍ଣଚକ୍ରଗଡ଼ ଓ କୁଲୁସରରେ ଦୁଇଟି ପ୍ରାଇମେରୀ ସ୍କୁଲ ଥିଲେ ମଧ୍ୟ ଶିକ୍ଷା ବ୍ୟବସ୍ଥା ଅତ୍ୟନ୍ତ ଶୋଚନୀୟ ।

ବିନମ୍ର ଅନୁରୋଧ, କୃଷ୍ଣଚକ୍ରଗଡ଼ରେ ଗୋଟିଏ ହରିଣ ଉଦ୍ୟାନ କରି ବନ୍ୟଜନ୍ତୁ ସଂରକ୍ଷଣ ସହିତ ଏ ଅଞ୍ଚଳ ଅଧିବାସୀଙ୍କ ଉପରୋକ୍ତ ନାଯର୍ଯ୍ୟ ଦାବି ଗୁଡିକ ସରଜମିନ୍ ତଦନ୍ତ କରି ବିହିତ ପଦକ୍ଷେପ ନିଆଯାଉ ।

*ବିନୀତ*
*ସଂପାଦକ*
*ମହାରାଜା ସୋମନାଥ ସିଂ ଜଗଦେବ ସ୍ମୃତି କମିଟି ଅନୁଗୋଳ*

ଏହାର ଏକକିତା ନକଲ :-
ତହସିଲଦାର, ଅନୁଗୋଳ
ଡ଼ି.ଏଫ.ଓ, ଅନୁଗୋଳ
ଡ଼ି.ଆଇ.ଅଫ୍ ସ୍କୁଲସ୍, ଅନୁଗୋଳ

# ଯୁଗଜନ୍ମା ମହାପୁରୁଷ କବିଚନ୍ଦ୍ର ଲାଟ୍ ନୃସିଂହ ରାଜଗୁରୁ

ହେମନ୍ତ କୁମାର ଧର
ସହପ୍ରାନ୍ତ- ନିରୀକ୍ଷକ, ଶିକ୍ଷା ବିକାଶ ସମିତି, ଓଡ଼ିଶା

ପ୍ରକୃତରେ କହିବାକୁ ଗଲେ ଲାଟ୍ ନୃସିଂହ ରାଜଗୁରୁ ଥିଲେ ଏକାଧାରରେ ଜଣେ ତ୍ରିକାଳଦର୍ଶୀ । ସର୍ବଜ୍ଞପଣ୍ଡିତ , ଆଶୁକବି, କୂଟନୀତିଜ୍ଞ , ଅର୍ଥନୀତିଜ୍ଞ ଓ ସମର ବିଶାରଦ । ଏହାଙ୍କ ଜନ୍ମ ତାଳଚେର ଦୁର୍ଗ ବ୍ରାହ୍ମଣ ଶାସନରେ ୧୬୯୦ ମସିହା । ନୃସିଂହ ଚତୁର୍ଦ୍ଦଶୀ ଦିନ ଜନ୍ମ ହୋଇଥିବାରୁ ପିତା ପଣ୍ଡିତ ବାଉରୀ ପ୍ରହରାଜ ଓ ମାତା ଶ୍ରୀମତୀ ଜାନକୀଦେବୀ ତାଙ୍କର ନାମ ନୃସିଂହ ବୋଲି ରଖିଥିଲେ । ବାଉରୀ ପ୍ରହରାଜ ଥିଲେ ସିଦ୍ଧଶକ୍ତି ସାଧକ, ପ୍ରଖ୍ୟାତ ତାନ୍ତ୍ରିକ ଓ ଯୋଦ୍ଧା । ତାଳଚେର ମହାରାଜା ନିମାଇଁ ହରିଚନ୍ଦନଙ୍କ ସମୟରେ ଚନ୍ଦ୍ରଗ୍ରହଣ ଯୁକ୍ତ ପୂର୍ଣ୍ଣିମା ରାତ୍ରିକୁ ଘନଘୋର ଅନ୍ଧକାର ଯୁକ୍ତ ଅମାବାସ୍ୟା ରାତିରେ ପରିଣତ କରିଦେଇଥିଲେ। ପ୍ରତିବାଦୀଙ୍କ ଦ୍ୱାରା ଧରା ହୋଇ ସେ ମଦକୁ ଦୁଗ୍ଧ ଓ କୁକୁଡ଼ାକୁ ଶୁକପକ୍ଷୀରେ ପରିଣତ କରିବାର କିମ୍ବଦନ୍ତି ଅଛି। ତାଙ୍କ ପୂଜାରେ ସନ୍ତୁଷ୍ଟ ହୋଇ ମା ଦୁର୍ଗା ମଣିଷ ରୂପରେ ତାଙ୍କ ଘରେ ବାସ କରୁଥିଲେ । ଏ ହେତୁ ସେ ରାଜକୃପାର ଅଧିକାରୀ ହୋଇପାରିଥିଲେ ।

ନୃସିଂହ ରାଜଗୁରୁ ପୂର୍ବଜନ୍ମରେ ହିମାଳୟର ଜଣେ ସାଧୁଥିଲେ। ତାଙ୍କର ଦେହାନ୍ତ ପରେ ସେ ନୃସିଂହ ନାମ ଧାରଣ କରି ଏକ ଶୁଭକ୍ଷଣରେ ତାଳଚେରର ବ୍ରାହ୍ମଣ ଶାସନରେ ଜନ୍ମ ଗ୍ରହଣ କରିଥିଲେ। ଜନ୍ମ ହେବାର ବର୍ଷକ ପରେ ମାତା ଓ ଦୁଇବର୍ଷ ପରେ ପିତାଙ୍କର ସ୍ୱର୍ଗବାସ ହୋଇଥିଲା । ଏଣୁ ତାଙ୍କ ଲାଳନ ପାଳନ ତାଙ୍କ ନିଜ ଦଦେଇ (ବଡ଼ବାପା) ବିଘ୍ନେଶ୍ୱର ରାଜଗୁରୁଙ୍କ ତତ୍ତ୍ୱାବଧାନରେ ଖୁଡ଼ୀଙ୍କଦ୍ୱାରା ହୋଇଥିଲା । ଢେଙ୍କାନାଳର ନାଧରାରେ ଥିବା ତାଳଚେରର ଇଷ୍ଟଦେବୀ ରାମଚଣ୍ଡିଙ୍କ ଦ୍ୱାରା ପ୍ରେରିତ ହୋଇ ସେତୁବନ୍ଧ ରାମେଶ୍ୱର ନିକଟରେ ବୈଦ୍ୟନାଥଙ୍କଠାରୁ ତ୍ରିକାଳ ଦର୍ଶୀ , ସର୍ବଜ୍ଞ ପଣ୍ଡିତ ଓ ସମର ବିଶାରଦ ବର ପ୍ରାପ୍ତକଲେ । ମା ରାମଚଣ୍ଡୀ ଓ ବୈଦ୍ୟନାଥ ତାଙ୍କୁ ନିଜ ପୁଅର ମାନ୍ୟତା ପ୍ରଦାନ କରି ହାତରେ ଅସ୍ତ୍ରଥିଲେ ତୁ ଯୁଦ୍ଧରେ ଅଜୟ ହେବୁ ବୋଲି ଆଶୀର୍ବାଦ ଦେଲେ । ଏଠାରେ ତାଙ୍କର ଜନ୍ମରୁ ଥିବା ଅନ୍ତଃକୋଷ ବ୍ୟାଧି ଭଲ ହୋଇଗଲା । ତାପରେ ଚଣ୍ଡୀଙ୍କ ଆଜ୍ଞାରେ ବଦ୍ରିନାଥ ଧାମକୁ ଯାଇ ନାରାୟଣଙ୍କର ପୂଜା ଅର୍ଚ୍ଚନା କଲେ । ତାଙ୍କର ସେବାରେ ସନ୍ତୁଷ୍ଟ ହୋଇ ବଦ୍ରିନାଥ କାର୍ତ୍ତିକ ଅମାବାସ୍ୟା ଦିନ ୧୧ଟା ସମୟରେ ସୂର୍ଯ୍ୟଦେବତାଙ୍କ ସମ୍ମୁଖରେ ଗୋଟିଏ ବାଉଁଶପତ୍ର ପ୍ରଦାନ କଲେ ।

ସେଥିପାଇଁ ସେ ଲେଖିଛନ୍ତି :

ଯେଉଁ ବେଣୁପତ୍ର ଆଜ୍ଞା ପାଇଛି କରେ, କେ ଆନ କରିବ ତାହା ନବ ସୃଷ୍ଟିରେ

ଅର୍ଥାତ ବେଣୁପତ୍ରଟି ପାଖରେ ଥିଲେ ନବଖଣ୍ଡ ପୃଥ୍ୱୀରେ ତାଙ୍କୁ କେହି ଜିଣି ପାରିବେ ନାହିଁ । ତା ପରେ ଜ୍ୟୋତି ମଠର ପୂଜ୍ୟ ଶଂକରାଚାର୍ଯ୍ୟଙ୍କଠାରୁ ଆଶୀର୍ବାଦ ପ୍ରାପ୍ତ କରି ଗଢ଼ୱାଲା ଜିଲ୍ଲାର କୀର୍ତ୍ତି ନଗର ରାଜଦରବାରରେ ନିଜର ଅଲୌକିକ କବି ପ୍ରତିଭାର

ପରିଚୟ ଦେଇ କବିଚନ୍ଦ୍ର ଉପାଧି ପ୍ରାପ୍ତ କରିଥିଲେ। ବାର ବର୍ଷ ବୟସରେ ଅନେକ ରାଜଦରବାରରେ ସମ୍ମାନିତ ହେବା ପରେ ଋଷିକେଶରେ ପହଞ୍ଚି ସାଧୁ ସନ୍ଥମାନଙ୍କୁ ପୂଜା ଅର୍ଚ୍ଚନା କରି ଆଶୀର୍ବାଦ ପ୍ରାପ୍ତ କରିଥିଲେ। ସେଠାରୁ ବିଦ୍ୟାନଗରୀ , କାଶୀଧାମରେ ପହଞ୍ଚି ରାଜ ଦରବାରରେ ଥିବା ପଣ୍ଡିତ ମାନଙ୍କୁ ପରାସ୍ତ କରି ସେଠାରେ ନଅ(୯)ବର୍ଷ ପର୍ଯ୍ୟନ୍ତ ଅବସ୍ଥାନ କଲେ। ତା.୩୧.୧୨.୧୮୧୧ରେ ସେ କାଶୀରୁ ଫେରି ତାଳଚେର ରାଜଦରବାରରେ ପହଞ୍ଚିଲେ। ରାଜା ଭାଗୀରଥୀ ହରିଚନ୍ଦନ ତାଙ୍କୁ ପୂଜା ଅର୍ଚ୍ଚନା କରି ଦରବାରରେ ସ୍ଥାନ ଦେଲେ। ସେତେବେଳେ ଜଣେ ପଣ୍ଡିତ ନିଜକୁ ପର୍ଶୁରାମଙ୍କର ଅବତାର ବୋଲି ପରିଚୟ ଦେଇ ନିଜକୁ ଶ୍ରେଷ୍ଠ ପଣ୍ଡିତ କରୁଥିଲେ। ନୃସିଂହ ରାଜଗୁରୁ ତାଙ୍କୁ ବିଦ୍ୟାରେ ପରାସ୍ତ କରି "କବିଚନ୍ଦ୍ର ଲାଟ୍" ଉପାଧିପ୍ରାପ୍ତକରି ରାଜଗୁରୁ ଭାବରେ ସ୍ୱୀକୃତ ହେଲେ।

ତା.୧୧/୦୮/୧୮୦୦ରେ ଜନ୍ମଗ୍ରହଣ କରିଥିବା ସୋମନାଥ ସିଂହ ଜଗଦେବ ଗୃହବିବାଦ ମଧ୍ୟରେ ତା.୩.୧୦.୧୮୧୪ରେ ଅନୁଗୋଳର ରାଜା ହେଲେ । ସେତେବେଳେ ନୃସିଂହ ରାଜଗୁରୁଙ୍କ ଖ୍ୟାତି ସାରା ଭାରତ ବର୍ଷରେ ବ୍ୟାପି ଯାଇଥିଲା। ଏ ଖବର ପାଇ ମହାରାଜା ସୋମନାଥ ସିଂହ ତାଳଚେର ଆସି ତାଙ୍କୁ ରାଜଗୁରୁ ପଦରେ ବରଣ କରି ରାଜଧାନୀ ପୁରୁଣାଗଡ଼କୁ ନେଇଗଲେ। ସେ ତାଙ୍କଠାରୁ , ଅର୍ଥଶାସ୍ତ୍ର, ନୀତିଶାସ୍ତ୍ର, ଅସ୍ତ୍ରବିଦ୍ୟା ଓ ଯୁଦ୍ଧବିଦ୍ୟା ଶିକ୍ଷାକରି ମହାରାଜାଧିରାଜ ହୋଇପାରିଥିଲେ। ରାଜା ନାବାଳକ ଥିବାରୁ ତାଙ୍କ ଅନୁମତିକ୍ରମେ ରାଜଗୁରୁ ଦୀର୍ଘ ପାଞ୍ଚବର୍ଷ ଅନୁଗୋଳର ଶାସନକୁ ସମ୍ଭାଳିଥିଲେ। ବ୍ରିଟିଶ ପକ୍ଷରୁ ମୋହନ ଲାଲ ଓ କାଶୀନାଥ ମୁଖାର୍ଜି ଶାସନକାର୍ଯ୍ୟକୁ ଦେଖୁଥିଲେ।

ରାଜମହାମନ୍ତ୍ରୀ ନୃସିଂହ ରାଜଗୁରୁ ଅନୁଗୋଳ ରାଜାଙ୍କର ସାମରିକ ବିଭାଗର ମୁଖ୍ୟ ପରାମର୍ଶଦାତା ରୂପରେ ଦାୟିତ୍ୱ ଗ୍ରହଣ କଲେ, ଯୁଦ୍ଧ ସମୟରେ ମୁଖ୍ୟ ସେନାପତିଙ୍କର ଦାୟିତ୍ୱ ମଧ୍ୟ ସେ ତୁଲାଉଥିଲେ। ରାଜଗୁରୁଙ୍କ ପରାମର୍ଶରେ ମହାରାଜାଙ୍କର ବ୍ରିଟିଶ ବିରୋଧି ସ୍ୱାଧୀନତା ସଂଗ୍ରାମ ସମଗ୍ର ଭାରତରେ ଚହଳ ପକାଇ ଥିଲା। ଦୀର୍ଘ ଅଠର ବର୍ଷ ଧରି ଏ ସଂଗ୍ରାମ ଲାଗି ରହିଥିଲା। ତା.୧୮.୧୨.୧୮୪୭ରୁ ଏହା ଉତ୍କଟ ଆକାର ଧାରଣ କଲା। ସମଗ୍ର ଭାରତବର୍ଷରେ ରାଜ୍ୟ ମହାରାଜାମାନଙ୍କର ସୈନ୍ୟ ଓ ବ୍ରିଟିଶ ସେନାଙ୍କୁ ୧୧ଦିନ ମଧ୍ୟରେ ପରାସ୍ତ କରିଥିଲେ । ଏହି ଯୁଦ୍ଧରେ ସେନାପତି ନିଜେ ରାଜଗୁରୁଥିଲେ। ପରାସ୍ତ ବ୍ରିଟିଶ ସେନା ନାଗପୁର ରାଜାଙ୍କ ମଧ୍ୟସ୍ଥତାରେ କପଟ ସନ୍ଧିର ଆୟୋଜନ କଲେ । ସେତେବେଳେ ବ୍ରିଟିଶ ସରକାର ଅର୍ଥଲୋଭ ଦେଖାଇ ନୃସିଂହ ରାଜଗୁରୁଙ୍କୁ କିଣିବାକୁ ଚେଷ୍ଟାକରି ବିଫଳ ହୁଅନ୍ତେ, ତାଙ୍କ ଦ୍ୱାରା ନିଯୁକ୍ତ ଖୋର୍ଦ୍ଧା ବୋଲଗଡ଼ର ଦେୱାନ୍ କମଳଲୋଚନ ପଟ୍ଟନାୟକଙ୍କ ମଧ୍ୟସ୍ଥିରେ ସାମରିକ ବାହିନୀର ଲୋକଙ୍କୁ ଅର୍ଥଦେଇ ନିଜର କରିନେଲେ। ତା.୧.୨.୧୮୪୮ ମାଘ କୃଷ୍ଣ ସପ୍ତମୀ ଦିନ ସକାଳ ସମୟରେ ଗୋରୁପଲଙ୍କୁ ଆଗରେ ରଖି ରାଜଧାନୀ କୃଷ୍ଣଚନ୍ଦ୍ର ଗଡ଼କୁ ଆକ୍ରମଣ କରି ବିନା ରକ୍ତପାତରେ ଦୁର୍ଗ ଦଖଲ କରନେଲେ। ସେହିଦିନ ଭାରତର ଶେଷ ସ୍ୱାଧୀନ ରାଜା ସୋମନାଥ ସିଂହଙ୍କୁ ବନ୍ଦୀ କରି ତାପରେ ହଜାରିବାଗ ଜେଲକୁ ପଠାଇ ଦେଲେ। ଗୋହତ୍ୟାର ପ୍ରବଳ ବିରୋଧ କରୁଥିବା ଗୋରକ୍ଷକ ମହାରାଜା କେବଳ ଗୋହତ୍ୟା ଭୟରେ ଯୁଦ୍ଧ ନକରି ପରାସ୍ତ ହେଲେ। ତା.୨/୬/୧୮୫୩ରେ ସେହି ଜେଲରେ ତାଙ୍କର ମୃତ୍ୟୁହେଲା।

ବ୍ରିଟିଶ ଇତିହାସରେ ଯୁବରାଜ ଲୋକନାଥ ସିଂହଙ୍କୁ ଯେଉଁ ଦୋଷାରୋପ କରାଯାଇଛି ତାହା ଠିକ୍ ନୁହେଁ, ଇଂରେଜମାନେ ଯୁବରାଜଙ୍କୁ ରାଜଗାଦି ନ ଦେଇ ଆଭ୍ୟନ୍ତରୀଣ ବନ୍ଦୀଭାବରେ ପୁରୀର ଦଇତାପଡ଼ା ମିନିମହଲ କୋଠୀରେ ବନ୍ଦୀକରି ରକିଲେ। ସେ ସେଠାରେ ତା.୨୬.୨.୧୮୮୨ରେ ଶେଷ ନିଃଶ୍ୱାସ ତ୍ୟାଗ କଲେ। ମୃତ୍ୟୁ ପୂର୍ବରୁ ସେ ବୀରବର ମାଗୁଣି ସିଂହଙ୍କୁ ପୋଷ୍ୟପୁତ୍ର କରିଯାଇଥିଲେ। ୧୮୮୨ ଠାରୁ ଅନୁଗୋଳର ପାରମ୍ପରିକ ରାଜାମାନେ ବାଲୁଅକଟାର ମହୀନ୍ଦ୍ର ଭବନ ରାଜପ୍ରାସାଦରେ ରହିଆସୁଛନ୍ତି।

ବ୍ରିଟିଶ ମାନେ ନୃସିଂହ ରାଜଗୁରୁଙ୍କର କୌଣସି ପତ୍ତା ନ ପାଇ କୃଷ୍ଣଚକ୍ରଗଡ଼ ଓ ପୁରୁଣାଗଡ଼ରେ ଥିବା ତାଙ୍କର ସମସ୍ତ ସଂପତ୍ତିକୁ ବ୍ୟାଜାପ୍ତ କରିଦେଲେ। ତା.୧୬.୦୪.୧୮୨୫ରେ ପ୍ରାପ୍ତ କେନ୍ଦୁପଲ୍ଲୀ ଗ୍ରାମରେ ଥିବା ଚାକରାନ୍ ରୟତ ନାମରେ ୬୯ଏକର ଜମି ସିକମ୍ କରିଦେଲେ। ୧୮୫୭ ବିଦ୍ରୋହର ସୂତ୍ରଧର ନୃସିଂହ ରାଜଗୁରୁ, ୧୯୬୦ରୁ ତାଳଚେର ରାଜାଙ୍କ ସହାୟତାରେ ପଦ୍ମଲାଭପୁର ଶାସନରେ ରହି ୧୮୭୯ଖ୍ରୀଷ୍ଟାବ୍ଦ ପୌଷ ପୂର୍ଣ୍ଣିମା ଦିନ ମାନବ ଲୀଳା ସମ୍ବରଣ କଲେ। ବିସ୍ମୟର କଥା ଏହି ଯେ ବଦ୍ରିନାଥଙ୍କ ଠାରୁ ପ୍ରାପ୍ତ ବାଉଁଶ ପତ୍ରଟି ତାଙ୍କ ମୃତ୍ୟୁ ସମୟରେ ହଠାତ୍ ଖଟୁଲିରୁ ପୁଣି ବଦ୍ରିନାଥଧାମକୁ ଉଡ଼ି ଚାଲିଯାଇଥିଲା। ତାହା ସହିତ ବୈଦ୍ୟନାଥଙ୍କଠାରୁ ପ୍ରାପ୍ତ ଅକ୍ଷୟ ତୂଣୀର ଉଡ଼ିଯିବା ସହିତ ରୁଦ୍ରାକ୍ଷମାଳାଟି ସାପହୋଇ ଚାଲିଯାଇଥିଲା।

ଆହୁରି ଆଶ୍ଚର୍ଯ୍ୟର କଥା। ୧୮୨୦ରୁ ୧୮୨୫ ପର୍ଯ୍ୟନ୍ତ ବୁଢ଼ାପଙ୍କ ଯୁଦ୍ଧର ବିବରଣୀ ଲେଖାଯାଇଥିଲା। ଏଥିରେ ରାଜାଙ୍କ ମୃତ୍ୟୁର ଭବିଷ୍ୟବାଣୀରେ ରାଜାଙ୍କର ମୃତ୍ୟୁ ଯେଉଁ ଦିନ ହେବବୋଲି ଦିଆଯାଇଥିଲା, ଠିକ୍ ସେହି ଦିନ ତାଙ୍କର ମୃତ୍ୟୁ ହେଲା। ବାସ୍ତବରେ ଯଦି ନୃସିଂହ ରାଜଗୁରୁ ନଥାନ୍ତେ ତେବେ ମହାରାଜା ସୋମନାଥ ସିଂହଙ୍କୁ କେହି ଜାଣି ନଥାନ୍ତେ। କାରଣ ଇଂରେଜମାନେ ମହାରାଜାଙ୍କର ସମସ୍ତ ପ୍ରମାଣ ନଷ୍ଟ କରି ଦେଇଥିଲେ।

# ସର୍ଦ୍ଦାର ନୀଳକଣ୍ଠ ବିଧାର ଉତ୍ତର କବାଟ

ଡ଼କ୍ଟର ଚୈତନ୍ୟ ସାହୁ,
(ଅବସର ପ୍ରାପ୍ତ ଅଧ୍ୟକ୍ଷ)

ଅନୁଗୋଳର ଶେଷ ସ୍ୱାଧୀନ ରାଜାଥିଲେ ମହାରାଜାଧିରାଜ ଶ୍ରୀ ଶ୍ରୀ ସୋମନାଥ ସିଂହ ମର୍ଦ୍ଧରାଜ ବୀରବର ମହୀନ୍ଦ୍ର ଜଗଦେବ। ସେ ଥିଲେ ବୀର, ଦେଶପ୍ରେମୀ ଓ ସ୍ୱାଧୀନ ଚେତା। ଇଂରେଜ ମାନଙ୍କ ପାଖରେ ସେ ମୁଣ୍ଡ ନୁଆଁଇ ନଥିଲେ , ବରଂ ଅସ୍ତ୍ରକୁ ପ୍ରତିଅସ୍ତ୍ର କରି ତା.୧୮.୧୨.୧୮୪୭ଦିନ ଅନୁଗୋଳର ଚତୁର୍ଦ୍ଦିଗରୁ ଆକ୍ରମଣ କରିଥିବା ବ୍ରିଟିଶ ବାହିନୀକୁ ମାତ୍ର ଏଗାରଟି ଦିନ ଯୁଦ୍ଧରେ ପରାସ୍ତ କରିଥିଲେ। ପରାଜିତ ବ୍ରିଟିଶ ମାନେ ଭେଦକୂଟ ଚକ୍ରାନ୍ତରେ ଏରାଜ୍ୟକୁ ଅଧିକାର କଲେ। ସର୍ଦ୍ଧାର, ନୀଳକଣ୍ଠ ବିଧାର ଥିଲେ ଅନୁଗୋଳ ରାଜାଙ୍କର ଉତ୍ତର କବାଟ। ଅନୁରୂପ ଦୁର୍ଗାପୁର ମୌଜାର ପ୍ରଧାନ, ଦୁର୍ଲ୍ଲଭ ରାମ ଥିଲେ ପଶ୍ଚିମ କବାଟ ଏହିଭଳି ଚତୁର୍ଦ୍ଦିଗକୁ ଚାରିଜଣ ସର୍ଦ୍ଦାର ପୂର୍ବକବାଟ, ପଶ୍ଚିମ କବାଟ, ଉତ୍ତର କବାଟ ଓ ଦକ୍ଷିଣ କବାଟ ଉପାଧିରେ ଭୂଷିତ ହୋଇ ମହାରାଜଙ୍କ ସାମରିକ ବାହିନୀରେ ନିଯୁକ୍ତି ପାଇଥିଲେ। ତନ୍ମଧ୍ୟରୁ ନୀଳକଣ୍ଠ ବିଧାର ଉତ୍ତର କବାଟ ଜଣେ। କିମ୍ବଦନ୍ତୀ ଅନୁସାରେ ନୀଳକଣ୍ଠଙ୍କ ବିଧ୍ୟାଧର ଉପାଧି ଅପଭ୍ରଂଶ ହୋଇ ବିଧାର ହୋଇଯାଇଛି।

ରାଜମହାମନ୍ତ୍ରୀ ନୃସିଂହ ରାଜଗୁରୁଙ୍କ ରଚିତ "ବୁଢ଼ାପଙ୍କ ଯୁଦ୍ଧ" ଯୁଦ୍ଧପୋଥି ୧୮୨୦ରୁ ୧୮୨୫ ମସିହାରେ ସଂଘଟିତ ଯୁଦ୍ଧରେ ଉକ୍ତ ନୀଳକଣ୍ଠ ବିଧାରଙ୍କ ସମ୍ବନ୍ଧରେ ନୃସିଂହ ରାଜଗୁରୁ ଷଷ୍ଠ ଛାନ୍ଦରେ ଲେଖିଛନ୍ତି।

ଯେବଣ ବାପୁଡ଼ା ମାଇଲା ବଜ୍ରନଳୀ, ଫେରିଲା ସେ
ପାଏକ ଆନନ୍ଦେ ଯାଏ ଚଳି ।୪୭।
ଉତ୍ତର ଦିଗେ ଥିଲା ଯେ ପ୍ରଚଣ୍ଡା ବିଧାର, ଗଲା
ଗଲା ଶତ୍ରୁବୋଲି ବିନ୍ଧିଲା ବାଜିବର ।୪୮।
ଆଗମୁଖେ ପଡ଼ି ମାଇଲା ତୀକ୍ଷ୍ଣ କୁନ୍ତ, ଶିରଗୋଟା
କାଟି ଧରିଲା ବାମହସ୍ତ ।୪୯।
ଯେବଣ ବାପୁଡ଼ା ଗୁଳି ମାଇଲାକ ପୁଣି, ଉତ୍ତର
କବାଟ ତାକୁ ପକାଇଲା ହାଣି ।୫୦।
ଲାଗିଲା ରଣଗୋଳ ପ୍ରଳୟ ସମର, ସଂସାରେ
ଦୁର୍ଲ୍ଲଭ ଯେ ମନୁଷ୍ୟେ ଅଗୋଚର।୫୧।

ବୁଢ଼ାପଙ୍କ ଯୁଦ୍ଧରେ ଶତ୍ରୁ ସୈନ୍ୟମାନେ ନୀଳକଣ୍ଠ ବିଧାରଙ୍କ ପ୍ରବଳ ପ୍ରତାପର ସମ୍ମୁଖୀନ ହୋଇପାରି ନଥିଲେ। ଢ଼େଙ୍କାନାଳ ସୈନ୍ୟ ଯିଏ ତାଙ୍କ ଆଗରେ ପଡ଼ିଥିଲା ତାକୁ ନଡ଼ାବିଡ଼ା ଭଳି ଫିଙ୍ଗି ଶତ୍ରୁ ସୈନ୍ୟଙ୍କ କବଳରୁ ବଳରାମ ପ୍ରସାଦର ଗଡ଼ନାୟକ, ହରିସିଂହର ମୃତଦେହକୁ ଉଦ୍ଧାର କରି ଆଣିଥିଲେ। ସମର ବିଶାରଦ ନୃସିଂହ ରାଜଗୁରୁ ବୁଢ଼ାପଙ୍କ ଯୁଦ୍ଧର ସୈନ୍ୟଚାଳନା କରି ସୋମନାଥ ସିଂହ ଜଗଦେବଙ୍କୁ ବିଜୟୀ କଲେ।

ଇଂରେଜ ମାନେ ତା.୧.୨.୧୮୪୮ ଦିନ ଅନୁଗୋଳ ଦଖଲ କରିନେବାରୁ ଭୟାବହ ଯୁଦ୍ଧରୁ ବର୍ତ୍ତୀଥିବା ବିଧାରଙ୍କ ପୁତ୍ର ଭୁବନ ମଙ୍ଗରାଜ, ନିଜର ଶ୍ୱଶୁରାଳୟ, ତାଳଚେର , ଡ଼ଆଁରା ଗ୍ରାମର ମହାନ୍ତି ଘରେ ରହୁଥିଲେ। ୧୮୫୫ମସିହା ମାଘ କୃଷ୍ଣପକ୍ଷ

ଦଶମୀ ଦିନ ଇଂରେଜ ସୈନ୍ୟ ଓ ମଙ୍ଗରାଜଙ୍କ ମଧ୍ୟରେ ପ୍ରଭାତ ସମୟରୁ ଘମାଘୋଟ ଯୁଦ୍ଧ ଲାଗିଥିଲା । ସେଥିରେ ଶହ ଶହ ଶତ୍ରୁ ସୈନ୍ୟ ନିହତ ଓ ଆହତ ହେଲେ । ପରିଶେଷରେ ଗୋପାଳ ପ୍ରସାଦର ହରି ଦେହୁରୀର ବନ୍ଧୁକ ଗୁଳିରେ ଭୂବନ ମଙ୍ଗରାଜ ଆହତ ହୋଇ ଆଖୁ ଖାତରେ ଗୋଡ଼ ଖସିଯିବାର ପଡ଼ିଯାଇ ବ୍ରିଟିଶ ଦ୍ୱାରା ବୀରଗତି ପ୍ରାପ୍ତ ହେଲେ । ଏହାଙ୍କ କଟାମୁଣ୍ଡକୁ କଟକ ବ୍ରିଟିଶ କମିଶନଙ୍କ ନିକଟକୁ ପଠାଯାଇଥିଲା । ଲୋକଶ୍ରୁତି ଅନୁସାରେ ନିଳକଣ୍ଠ ବିଧାର କଣଲୋଇଠାରେ ବନ୍ଦୀରହି ଏ ଖବର ପାଇ ଟଳିପଡ଼ିଥିଲେ । ଇଂରେଜମାନେ ସିରାଜ ଉଦ୍ଦୌଲାଙ୍କ ସେନାପତି ମିରଜାଫରଙ୍କୁ ହାତ କରି ବଙ୍ଗ ଅଧିକାର କରିଥିଲେ । ମାତ୍ର ଅନୁଗୋଳ ମହାରାଜା ସୋମନାଥ ସିଂହ ଜଗଦେବଙ୍କର ସେନାପତି ମାନଙ୍କୁ ହାତ କରିପାରିନଥିଲେ । ତଳମୂଳ ପ୍ରଗଣା ଅନ୍ତର୍ଗତ ଗଡ଼ସନ୍ଥୀର ଗଡ଼ନାୟକ ଗଦାଧର ସର୍ଦ୍ଦାର ସିଂହ ମହାରାଜାଙ୍କ ଠାରୁ ୧୧୫୦ଏକର ଜମିପାଇ ୧୮୪୬ ରେ ହିନ୍ଦୋଳରୁ ଅଧିକୃତ କୁରୁମିଠା ଗ୍ରାମର ସର୍ବରାକାର ନିଯୁକ୍ତି ପ୍ରାପ୍ତ ହୋଇଥିଲେ ।

*ଟାମ୍ରିଟ୍ କଲୋନୀ, ଅନୁଗୋଳ*

## ସ୍ୱାଧୀନତା ସଂଗ୍ରାମର ଅଗ୍ରଗାମୀ ସାରଥୀ ସୋମନାଥ ସିଂହ ଜଗଦେବ

ପ୍ରଫେସର ଡ଼ଃ ଜୟନନ୍ଦ ନାୟକ

ଭାରତର ସ୍ୱାଧୀନତା ସଂଗ୍ରାମ ବିଶ୍ୱଇତିହାସରେ ଏକ ବିଶିଷ୍ଟ ଘଟଣା । ଏହା ସମଗ୍ର ବିଶ୍ୱକୁ ପ୍ରକମ୍ପିତ କରିଥିଲା । ବିନା ଅସ୍ତ୍ରରେ ପ୍ରବଳ ପ୍ରତାପୀ ସାମ୍ରାଜ୍ୟବାଦୀ ଇଂରେଜ ଶାସନକୁ ଏ ଦେଶରୁ ହଟାଇ ଦିଆଯାଇଥିଲା ମହାତ୍ମାଗାନ୍ଧୀ ଆନ୍ଦୋଳନର ସାରଥୀ ହେଲେ ମଧ୍ୟ ଅଗ୍ରଗାମୀ ସାରଥୀ ଥିଲେ ଅନୁଗୋଳ ରାଜ୍ୟର ମହାନ ରାଜ ସୋମନାଥ ସିଂହ ଜଗଦେବ । ରାଜ୍ୟସ୍ୱତ୍ୱ ନୀତିକୁ ଅନୁସରଣ କରି ଯେତେବେଳେ ଇଂରେଜ ସରକାର ଭାରତ ଗୋଟିଏ ପରେ ଗୋଟିଏ ରାଜ୍ୟକୁ ଇଂରେଜ ସାମ୍ରାଜ୍ୟରେ ମିଶାଇ ଚାଲିଥିଲେ ସେତେବେଳେ ସୋମନାଥ ସିଂହ ଭାରତ ମାତାର ମୁକ୍ତିକଥା ଚିନ୍ତା କରୁଥିଲେ । ଅନୁଗୋଳ ରାଜ୍ୟର ସ୍ୱାଭିମାନ ଓ ସାର୍ବଭୌମତ୍ୱକୁ ରକ୍ଷା କରିବା ନିମିତ୍ତ ପ୍ରବଳ ପ୍ରତାପୀ ଇଂରେଜ ମାନଙ୍କୁ ପ୍ରତିରୋଧ ଓ ବିରୋଧ କରୁଥିଲେ । ଇଂରେଜମାନେ ବସାଇଥିବା କରକୁ ଦେଉନଥିଲେ । ଖୋଲାଖୋଲି ଭାବରେ ଇଂରେଜ ମାନଙ୍କ ଆଇନ୍‌କୁ ଅବଜ୍ଞା କରୁଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଭାରତ ବର୍ଷରେ ଜାତୀୟତାର ଅଙ୍କୁରୋଦ୍‌ଗମ ହୋଇ ନଥିଲା । ଇଂରେଜ ମାନଙ୍କ କଳା ଆଇନ୍‌କୁ ମୁଣ୍ଡପାତି ସହ୍ୟ କରିବା ଭାରତୀୟଙ୍କ ମାନସିକତା ଥିଲା । ଅର୍ଥନୈତିକ ଶୋଷଣ ଓ ସାମାଜିକ ଭେଦଭାବ ଭାରତୀୟଙ୍କୁ ଅତିଷ୍ଠ କରିଥିଲା । ଏ ଭଳି ଏକ ସମୟରେ ସୋମନାଥ ସିଂହ ଜଗଦେବ ଭାରତ ମାତାର ହସ୍ତରୁ ଶୃଙ୍ଖଳ ଛିନ୍ନକରି ଫିରଙ୍ଗୀ ଶାସନକୁ କ୍ଷତବିକ୍ଷତ କରୁଥିଲେ । ଗରିଲା ଯୁଦ୍ଧଶୈଳୀ ଅନୁସରଣ କରି ବିଦେଶୀ ହୃଦୟରେ ଭୟ ସଂଚାର କରୁଥିଲେ । ସିପାହୀ ବିଦ୍ରୋହକୁ ଯଦି ପ୍ରଥମ ସ୍ୱାଧୀନତା ସଂଗ୍ରାମ କୁହାଯାଏ । ଅନୁଗୋଳ ମାଟିରେ ଏହାର ପ୍ରଥମ ପଦଧ୍ୱନୀ ଶୁଣାଯାଇଥିଲା । ସୋମନାଥ ସିଂହ ଜଗଦେବ ସିପାହୀ ବିଦ୍ରୋହକୁ ଇନ୍ଧନ ଯୋଗାଇ ଥିଲେ । ଏ ଦୃଷ୍ଟିରୁ ବିଚାର କଲେ ସୋମନାଥ ସିଂହ ଜଗଦେବ ସ୍ୱାଧୀନତା ସଂଗ୍ରାମର ଅଗ୍ରଗାମୀ ସାରଥୀ ଥିଲେ ।

# ANNEXATION OF ANGUL (1848), A POLITICAL EXPEDIENCY FOR THE BRITISH GOVERNMENT

DR. (MRS) RAMA MANJARI SAHU

The annexation of Angul with the British Empire in 1848 was for mere political consideration than actual facts. The allegations against the Raja were not properly established. The British authorities accused the Raja of implicity with th Khond leaders and defying Govt. orders when he did not report his attendance to Cuttack. He was really ill and thus pleaded his indability. A.J.Mills, the Superintendent and Commissioner of Tributary mahals himself reported that he was unabhle to move out on açcount of the effects of humatism. "General Campbell " when invaded Angul and caught the king reported that he was literally being carried away in the arms of some of his women , He couldnot help himself for he was a cripple, So he succumbed to the over-powering formce and circumstances and was brought as a prisioner into my camp".

In the first stage of the hostility between , the king of Angul and the British authorities, the officers like captain Macpherson and his Principal Assistant Kadenhead as well as A.J.M . Mills brought serious charges against Somannath Singh based upon suspicion and guesswork. When the successor of Mills. Supt. Francis Gouldsburg sent a parwana to the Raja of Angul asking him to clear himself of the charges , the Raja submitted a memorandum on March 22, 1847, that all the allegations against him were false and professed his loyality to the British Govt and promised to help in the apprehension of Nabaghana Kanhara and Chakara Bisoi . The Bengal Govt. did not think him innocent and instructed the commissioneer to inform the Raja either to reprot at Cuttack to clear himself of the imputation cast upon him or to deliver up the rebel leaders, Chakra Bisoi and Nabaghana Kanhara. The Raja denied the charges and requested further to send a Chaparasi to investigate the presence of the rebels living in his estate. His plead of ill ness was construed as a pretext for avoiding attendance.

Another Parwana was sent on November 12, 1947 asking the Raja to compley with the Govt. order within 25 days from the date of issue. The charges were aiding and abetting Nabaghana Kanhara and other rebel leaders and plunder and destruction of two villages of Dasapalla . Again the Raja expressed his helplessness to attend the superintendent for his

illness. The chaparasi who went with the parwana saw himself the Raja being confined to bed. The Raja in writing informed the commissioner that he had empowered his son to act in all matters on his behalf. But the British called him disloyal, defiant and disobedient. Historian F.B.Lawri has found fault in the Raja of Angul stating that the Raja treated the threats with contempt and therefore refused to appear before the Cuttack commissioneer. " He furthers comments that the Raja defied the Government order for under estimating the strength of the British Govt. and misunderstanding its tolerrance and power.

Having studied the complex nature of the charges against Sommanath Singh and the development of events , Brigadiar General Dyce, Commanding the Northern Division, Madras army who was in political charges of the Hill tracks of Orrissa camp at Berhampur, reported that, There has been an effort to embroil the Angul Raja with the Government to fix upon him the odiun of all the recent commotions and disturbances..... The Raja had every cause for the indignation he expressed . "So the Bengal Government softened its attitude and a fresh investigation was ordered under captain Dunlop. Commanding the Paik Company stationed at Baudh." On account of his illness the Raja was directed to meet captain Dunlop at Barmul the Raja complied with the order. After investigation, captain Dunlop exornerated the Raja from Charges aginst him as the witnesses examined by him were unable to identify the propietors. So Goldsbury changed his opinion and referring the report of captain Dunlop he made a remark that no reliance can be placed upon the testimony furnished by Kadenhead as proof of the accusation is altogether waning , justice demands for the Raja to release him from charges , But the current of events started to flow against the kning of Angul for certain ulterior motives of the British authorities. The direct interference of the Govt. of India in such a matter was unusual and unprecedented . It did not interfere when the Agent of the South-west Frontier Agewncy and the Superintendent of the Tributary mahals quarreled during the Bamanaghati dispute. Lord Dalhousie who assumed the post of Governor - General in India on June 12, 1848 gave a clear decision for the annexation at Angul. "We have a perfect right to do with it" declared lord Delhousie What we please. It (Angul) has been justly forfeited and no one could whisper a complaint if we

turned out the whole lot and took it to ourselves". Being an imperialist to the core Delhousie furtther continued and there can be no doubt that the example among these wild and recusant tribes would be most salutary and strengthen greatly the hands of the Government in effecting the suppression of the barbarous rites (Meriah sacrifice etc.) they practice, against which the Government has officially and repeatedly declared unmitigated and lasting hostility. "Lord Dalhousie took the plea that the Raja made efforts to prevent the suppression of Meriah. But the Raja had nothing to do with this religious rite, while the Raja of Baud who failed to suppress the sacrifice was not punished, Angul Raja was made a convict. Again Buxi Jagabandhu who fought against the British was pardoned, the cripple Raja who had never come into direct clash with the British authorities was deprived of his throne and sentenced to life imprisonment. Thus the whoe " thing was viewed by Dalhousie from political expediency."

Angul held strategical location which prompted the British to occupy it. It gave then complete control over the narrow passes of Barmul and Tikarpar. Moreover, the government wanted to use the annexation of Angul as an example to frighhten the other Rajas not to be guilty of insubordination. The commissioner G.F. Cockburn infact warned the Raja of Barma for his help to Surendra Sai quoting to him the fate of Angul Raja. Historian F.B. Laurie records that the confiscation of Angul taught other chiefs and inhabitants of the surrounding countries that it is neither dense jungles not sleet ghats that would save them from the punishment awarded to misconduct and rebellion. Yet another financial factor cannot be completely ignored, as the company was reported to have gained twenty times more than the earlier tribute. Dri Jagannath Patnaik comments., Thus strange was the dispensation of justice in case of Angul. One can not but think that here too the British authorities followed the policy of giving a dog bad name and then hanging it." Give a name to the dog if you want to punish it."

**BIBLIOGRAPHY**

1. Orissa District Gazetteers, Dhenkanal
Government of Orissa, 1972

2.Patnaik, Jagannath, Feudatary States of Orissa, (1803 - 1837) Vol.I ,and Vol. II ,Allabad, 1988.

***Reader in History***
***Govt. College, Angul(Orissa).***

# (ଖ) କବିତା ବିଭାଗ



## ଅମର ସିଏ ଏ ବୀର ଭୂମେ

ହାଡ଼ିବନ୍ଧୁ ମିଶ୍ର
କରାଓରପୁର ଶାସନ, ଅନୁଗୋଳ
ଆଜୀବନ ସଭ୍ୟ ଉତ୍କଳ ସାହିତ୍ୟ ସମାଜ

ଅଠରଶହ ଖ୍ରୀଷ୍ଟାବ୍ଦର ଅଗଷ୍ଟମାସ ଏଗାର ଦିନ
ପୁରୁଣାଗଡ଼ ରାଜବାଟିରେ ବାଜିଲା ଶୁଭ ଶଙ୍ଖ ସ୍ୱନ
ବାଜିଲା ବାଦ୍ୟ, ବାଜିଲା ତୂରୀ
ଖୁସିରେ ଗଲା ଉଆସ ପୂରି
ସୋମନାଥଙ୍କ କରୁଣା ଲଭି
ରାଜକୁମାର ହୋଇଲେ ଜନ୍ମ ।।
ଶିବରେ ପୂଜି ପାଇଲେ ରାଣୀ
ଏକଥା କିଏ ନଥିଲେ ଜାଣି
ଜାଣିଲାପରେ ସରବେ ମିଳି ,
ରଖିଲେ ସେଇ ନାମ
ଗାଇଲେ ଭାଟ ନାଚିଲେ ଦାସୀ
ଖାଇଲେ ବସି ନଗରବାସୀ
ଉଦିଲେ ରବି ପୂର୍ବା କୋଣେ
ସ୍ୱର୍ଣ୍ଣ - ଶିଖା - ସମ
ପୁରୁଣା ଗଡ଼ ରାଜବାଟିରେ ଶୁଭିଲା ଶଙ୍ଖ ସ୍ୱନ ।।
ଉଆସ ଶାରୀ ଗାଇଲେ ଶୁକ
କଳି ଏ ହେଲେ ହର୍ଷମୁଖ
ଅଳି ଏ ଗାଇ ନାଚିଲେ ଫୁଲେ
ପ୍ରଭାତ ମନୋରମ
ରାତିରୁ ମେଘ ଯାଇଛି ଛାଡ଼ି
ପକ୍ଷୀ ଗାଇ ବୁଲିଲେ ଉଡ଼ି
ମଙ୍ଗଳ ଗୀତ କାକଳି ସୁରେ

ସହର ସାହି ଗ୍ରାମ
ଅଠର ଶହ ଖ୍ରୀଷ୍ଟାବ୍ଦର ଅଗଷ୍ଟମାସ ଏଗାର ଦିନ । ।
କେତେ ସମୟ ସୁଖରେ ଗଲା
ଅଶୁଭ କାଳ ପ୍ରବେଶ ହେଲା
ବାଳୁତ ସୋମନାଥଙ୍କ ପାଇଁ
ବିଧାତା ସତେ ହେଲା କି ବାମ ?
ଜୟ ହୋଇଲେ ରାଇଜେ ରାଜା
ପାଳିଲେ ସୁଖେ ସକଳ ପ୍ରଜା
ଗୃହ କନ୍ଦଳ , ଆସନ ଲୋଭି
ପୃଥ୍ୱୀ ହେଲ ଚମ
ସେ ରାତି ଥିଲା କି ଭୟଙ୍କର
ଗୋପୀ - ଜୟ ଓ ତିନିଶିଶୁର
ନୃସଂଶ ହତ୍ୟା ଆତତାୟୀରେ
କାମ୍ୟ ସିଂହାସନ
ସୋମନାଥଙ୍କୁ କୋଳରେ ଧରି
ରାଣୀ ବିକଳେ ଲୁଚିଲେ ଡ଼ରି
ଭୁବନ ଚନ୍ଦ୍ର ମଙ୍ଗରାଜ ବିଶ୍ୱାସୀ ସନ୍ନିଧାନ
ଘୋଡ଼ାରେ ନେଇ ସେ ମଙ୍ଗରାଜେ
ମା ପୁଅଙ୍କୁ କ୍ଷୀପ୍ର ତେଜେ
ପହଞ୍ଚାଇଲେ ନିମାପଡ଼ାର ଜମିଦାରଙ୍କ ସ୍ଥାନ । ।
ରାୟଟ ସିଂହ ସେ ଅଭିରାମ
ପାଳିଲେ ସୋମ ପିତୃସମ
ମାତୁଳ ସିଏ ଇତିହାସରେ ଧନ୍ୟ ତାଙ୍କ ନାମ ।
ଜୟଙ୍କ ରାଣୀ ସାଧ୍ୱୀସତୀ
ସ୍ୱାମୀ ଚିତାରେ ଆତ୍ମହୂତି
ଝରାଇ ଲୁହ ଉଚ୍ଚାରି ମୁଖେ ଜଗତ ନାଥ ନାମ
ପୃଥ୍ୱୀପାଇଁ ବହିଲା ଝଡ଼
କମ୍ପିଲା ରାଜ୍ୟ - କମ୍ପିଲା ଗଡ଼

ଖଲାସ ହେଲେ ସାକ୍ଷୀବିନା , ଚିତ୍ତ ହେଲା ଭ୍ରମ
ଆସନ ଲୋଭି ପୃଥ୍ୱୀ ପାଇଁ ବିଧାତା ସତେ
ହେଲାକି ବାମ । ।
ଅଠର ଶହ ଚଉଦେ ପୁଣି
ଅକ୍ଟୋବର ତାରିଖ ତିନି
ସୋମ ହୋଇଲେ ବାଳୁତ ରାଜା
ଅନୁଗୋଳର ମାନ
ବାଜିଲା ବାଦ୍ୟ - ବାଜିଲା ତୂରୀ
ଉଆସ ପୁଣି ଉଠିଲା ପୂରି
ଦାୟିତ୍ୱ ନେଇ ରହିଲେ ଲୋକ , ବିଜ୍ଞବୁଦ୍ଧିମାନ
ନୃସିଂହ ମନ୍ତ୍ରୀ ସମର ଶିକ୍ଷା
ବନ୍ଧୁ ସଦସ୍ୟେ ମନ୍ତ୍ର ଦୀକ୍ଷା
ଦରବାରର ଦକ୍ଷ କର୍ମୀ
କଲେ ଯେ ଯାହା କାମ
ପାଞ୍ଚ ବରଷ ହୁଅନ୍ତେ ଶେଷ
ଦାୟିତ୍ୱ ନେଲେ ନିଜେ ନରେଶ
ହୋଇଲେ ବିଜ୍ଞ ଶାସିଲେ ପ୍ରଜା
କୀରତି ଧନ୍ୟ ଧନ୍ୟ । ।
ସେ ଇତିହାସ ପଢ଼ିଲେ ଆଣି
ପାରିବ ବୁଝି ପାରିବ ଜାଣି
ସାହସୀ ଯୋଦ୍ଧା ପଣ୍ଡିତ ପଣେ
ସେଥିଲେ ଅଗ୍ରଗଣ୍ୟ । ।
କୂଟ ଚକ୍ରାନ୍ତ ହୋଇଲା ଯେତେ
ଅଟଳ ରାଜା ରହିଲେ ଚିତ୍ତେ
ସ୍ୱାଧୀନ ଚେତା ଇଂରେଜ ବଶ
ନୋହିଲେ କଦାଚନ
ଗଢ଼ିଲେ କୃଷ୍ଣ ଚକ୍ର ଗଡ଼
ଶୁଣିଲେ କମ୍ପେ ଅଇରି ହାଡ଼

ସେ ମାଟି ଗାଏ କବି ନୃସିଂହ ବୁଢ଼ାପଙ୍କର ଗାନ
ଦେଖିନ ଯଦି ଯାଅହେ ଦେଖି
ଇତିହାସର ସେ ମୂକ ସାକ୍ଷୀ
ମହାର୍ଘତାର ପ୍ରତିଟି ରେଣୁ
ଗିରିକନ୍ଦର ବନ ।।
ଏମିତି ବେଳ ଆସିଲା ଦିନେ
ବଇରି ହେଲେ ଆପଣା ଜନେ
ସ୍ୱାର୍ଥ ନ୍ୱେଷୀ ବିବେକ ହୀନ
କେତେକ ଭୀରୁ ଘୃଣ୍ୟ
ଯେବେଳେ ରାଜା ରୋଗରେ ପଡ଼ି
ଗଲେନି କେଣେ ଉଆସ ଛାଡ଼ି
ସେତେବେଳେ ମାଡ଼ି ଆସିଲେ ଘେନି
ଗୋରା ଶାସକ ସୈନ୍ୟ ।।
ଆଗରେ ଗୋରୁ ପଛରେ ସୈନ୍ୟ
ଲଢ଼େଇ ହେଲେ ପଶୁ ନିଧନ
ଏକଥା ଜାଣି ଧାର୍ମିକ ରାଜା
ନେଲେନି ଗୋରା ପ୍ରାଣ ।।
ହୋଇଲେ ବନ୍ଦୀ ଏ ମାଟି ନେତା
ନଇଁଲେ ନାହିଁ ଆପଣା ମଥା
ଅନୁଗୋଳର ଗୌରବ ସେ
ତେଜସ୍ୱୀ ମହୀୟାନ
ଯଶସ୍ୱୀ ସୋମନାଥଙ୍କ ପାଇଁ
ବିଧାତା ପୁଣି ହୋଇଲା ବାମ ।।
ହକାରି ବାଗ କେଲ୍ କହେ
ନୁହେଁ ସେ ଭୀରୁ ବନ୍ଦୀ ନୁହେଁ
ପୁଣ୍ୟତାର ଅଶେଷ,
ଦେଲା ଦେଶର ହିତେ ପ୍ରାଣ ।।

ଅଠରଶହ ତେପନ ସନେ
ଜୁନ୍ ମାସର ଦ୍ୱିତୀୟ ଦିନେ
ମହାପ୍ରୟାଣେ ଜୀବନ-ଦୀପ
ଜଳିଲା ଦିବ୍ୟ - ଧାମ ।।
ଆଜିର ଏଇ ପୁଣ୍ୟଦିନେ
ଆସହେ ବନ୍ଧୁ ସଂଗୀ ମାନେ
ଗାଇବା ସର୍ବେ ମୁକ୍ତ କଣ୍ଠେ
ସେରାଜା ଜୟ ଗାନ ।।
ଜନ୍ମ ଯାଂର ଜଗତ ପାଇଁ
ତା ପାଇଁ ମୃତ୍ୟୁ ନାହିଁରେ ନାହିଁ
ଅମର ସିଏ ଏ ବୀର ଭୂମେ
ବିଶ୍ୱେ ମହୀୟାନ ।।

ପାଦଟୀକା :

ବନ୍ଧୁ ସଦସ୍ୟେ : ଜରାଓରପୁର
ଶାସନର ପଣ୍ଡିତ ଜଗବନ୍ଧୁ ସଦସ୍ୟ ଶର୍ମା
ନୃସିଂହ ମନ୍ତ୍ରୀ : କବିଚନ୍ଦ୍ର ଲାଟ୍
ନୃସିଂହ ରାଜଗୁରୁ : କୃଷ୍ଣଚନ୍ଦ୍ର ପୁର ଶାସନ (କେନ୍ଦୁପଲ୍ଲୀ ଗ୍ରାମ)
ସିଏ ମହାରାଜାଙ୍କର ମନ୍ତ୍ରୀ - ଦରବାରୀୟ ରାଜଗୁରୁ ତଥା ବୁଢ଼ାପଙ୍କ ଯୁଦ୍ଧ ପୋଥିର ରଚୟିତା ।
ମହାରାଜା ସୋମନାଥ ସିଂହ ଜଗଦେବଙ୍କ ମାତା : ସୁଲୋଚନା ଦେବୀ
ମାମୁଁ ଘର - ନିମାପଡ଼ା,
ଶ୍ୱଶୁରାଳୟ - ତାଳଚେର ରାଜପ୍ରାସାଦ
ସ୍ତ୍ରୀ - ତାଳଚେର ରାଜଜେମା ପ୍ରୀତିମଞ୍ଜରୀ (ପାଟରାଣୀ )





# ସ୍ମୃତିର ସ୍ୱାକ୍ଷର

## ପୂଣ୍ୟ-ଅଗଷ୍ଟ ଏଗାର

ଶ୍ରୀ ଅମୀୟ ମିଶ୍ର

ପୁନଶ୍ଚ ଆସିଛି
ଇତିହାସର ନୂଆ ରୂପ ରେଖ
ପୃଷ୍ଠା ପରେ ପୃଷ୍ଠା ସଜାଇଛି
ଏ ମାଟିର ଅଶ୍ରୁଳ ଦୁଃଖ ଯନ୍ତ୍ରଣା
ରଚିଛି ବିଶ୍ୱ ଇତିହାସରେ
ରାଜା ସୋମନାଥ ସିଂହ ଜଗଦେବଙ୍କ
ବିଜୟ ବାର୍ତ୍ତାର ସ୍ୱାଧୀନ ଚେତନାର ଉଦ୍‌ଗାତା
ଶିଳାରେ ଶିଳାରେ କାନ୍ଥାଷ ଉପରେ
ଆଙ୍କିଛି କେତେ ବୀର, ଇଂରେଜ୍ ଗୋରା
ସଇତାନ୍ କାହାଣୀ
ହଜାରୀବାଗ କାରାଗାରର ଗୋଟି ଗୋଟି
ବନ୍ଦୀର ଆତ୍ମକଥା ।
"ବାଜୁଛି ତ ବାଜୁ ଏଠି ରଣ ଦୁନ୍ଦୁଭି ଶାହାନାଇ ସ୍ୱର
ଫୁଟୁଛିତ ଫୁଟୁ ଏଠି ଯେତେ କମ୍ଭୁ ଗୋଳାବାରୁଦ, ତୋପ
ଫୋଟକା ସ୍ୱର
ଏ ମାଟିର ଯୋଗ୍ୟ ବୀର ହୋଇନି ଅଧୀର
ନିଜେ ଚିହ୍ନି ଚିହ୍ନାଇଛି, ଦମ୍ଭ ଧରି ବୁକୁ ଚିରି
ଖୋଲିଛି ସେ ସ୍ୱାଧୀନତାର ରୁଦ୍ଧ ଦ୍ୱାର ।"
ସ୍ୱାଧୀନତା, ଦେଶପ୍ରେମୀ, ସ୍ୱାଭିମାନୀ
ସୋମନାଥ ସିଂହ ଜଗଦେବ
ଭୀଷ୍ମଙ୍କ ପରି ପ୍ରତିଜ୍ଞା, ଶପଥ, ଗଙ୍ଗା ପରିପବିତ୍ର
ଶରୀର ତୁମର, ବୀରଭୂମି ଅନୁଗୁଳ
ଜନମ ଭୂଇଁ ମାଟିର ପ୍ରିତୀ
ଏ ମାଟି କହୁଛି,
ତୁମେ ଭାରତର ଶେଷ ସ୍ୱାଧୀନ ନରପତି ।
ଜାଗରେ ଜାଗ ଅନୁଗୋଳବାସୀ ଜାଗ
ବେଳତ ଗଲାଣି ଗଡ଼ି
କାନ ପାତିଥାଅ ନଜରି ଫେରି
ବିଶ୍ୱ ଜନତାଙ୍କୁ ଦେଇ ମୁକ୍ତି ମାର୍ଗ
ସ୍ୱାଧୀନତା ମହାମନ୍ତ୍ରକୁ ଶିଖାରେ
ଢ଼ାଳି ଦେଇଛି ଯେ ପ୍ରାଣର ବଳୀ
ତୁମରି ସ୍ମୃତିକୁ ଉଜ୍ଜୀବିତ କରି
କୋଟିଏ ଜନତା ମାରୁଛି ତାଳି ।।
ଏ ରାଜ୍ୟର ଅଧିପତି ତୁମେ
ମୁକ୍ତି ମଶାଲ-ବିଜୟ ତିରଙ୍ଗା ଧରିତ୍ରି
କୃଷ୍ଣଚକ୍ର ଗଡ଼, ସମର ମାଟିରେ
ଲଢ଼ିଥିଲେ ଦିନେ କେତେ ସଂଗ୍ରାମୀ
ସାହାସୀ-ବୀର ଯୋଦ୍ଧା ପାଇକ ବ୍ରିଟିଶ୍
ବିରୁଦ୍ଧେ ହସ୍ତେ ଧନୁ, ତୀର, ବର୍ଚ୍ଛା, ନିନାଦ ଧରି ।।
ହେ ବିଶ୍ୱ ସମ୍ରାଟ, କାଳଜୟୀ
ଦିଗ୍‌ବିଜୟୀ, ଦେଶପ୍ରେମୀ
ବିପ୍ଳବୀ ବୀର ସୋମନାଥ ସିଂହ ଜଗଦେବ
ତୁମେ କ୍ରାନ୍ତିବୀର ଯଶସ୍ୱୀ ସ୍ୱାଭିମାନୀ ରାଜା
ତୁମରି ସ୍ମୃତିକୁ ଗାଇ
ଉଡ଼ାଇଛୁ ଆମେ ଅନୁଗୋଳ ମାଟିରେ
ବିଜୟର ଧ୍ୱଜା ।
ତୁମେ ଚିର ବନ୍ଦନୀୟ ଚିର ଅମର
ଯୁଗ ଯୁଗର
ପୂଣ୍ୟ ଅଗଷ୍ଟ ଏଗାର
ରଖିଛି, ରଖିବ ଏ ମାଟି ତୁମ ଜନ୍ମ ଅମ୍ଳାନ ସ୍ମୃତିର
ସ୍ୱାକ୍ଷର ।

ତାମ୍ରିତ କଲୋନୀ, ଅନୁଗୋଳ
ମୋ. ୯୮୬୧୪୧୪୩୦୦



# ହେ ମହାତ୍ମା, ତୁମ୍ଭ ପଦତଳେ.....

ଶ୍ରୀମତୀ ଗୀତାମୟୀ ମହାପାତ୍ର

ଶୁଭ କେଡ଼େ ଆଜଦିନ ଶୁଭ ଅଠରଶହ ପୁଣ
ଧରାପୃଷ୍ଠେ ଅବତୀର୍ଣ୍ଣ ଯେ ପୂଣ୍ୟଜନ
ଧନ୍ୟ ତାଙ୍କରି ମହିମା ଧନ୍ୟ ସେହି ଯୁଗଜନ୍ମା
ପୂଣ୍ୟକାଳେ ଜନ୍ମିଥିଲେ ଯେହି ରାଜନ ।।
ଏଗାର ଯେ ତାରିଖ ଜାଣି
ସୁନାବରଷିଲା ମାଆ ବୁଢ଼ୀ ଠାକୁରାଣୀ ।।
ଅଗଷ୍ଟ ମାସ ଏଗାର ଜ୍ୟୋତିର୍ମୟ ରାଜନଅର
ସୋମନାଥ ବିଜେ ହେଲେ ଆନନ୍ଦମନ
କଳାପାଟର ମହିମା କିଦେବା ତାରେ ଉପମା
ଢ଼ାଳି କୃପାବାରି ମା' ପାଳଇ ସନ୍ତାନ
ଆହେ ମହାରାଜାଧିରାଜା
ଅନୁଗୋଳ ପାଇଁ ତୁମେ ଧରିଲ ଧ୍ୱଜା ।।
ଗଡ଼ପରେ ଗଡ଼ ଜିତି ମହୀରେ ରଖିଛ କୀର୍ତ୍ତି
ଇତିହାସ ଗାଇତିଛି ତୁମ୍ଭରି ସ୍ତୁତି
ତୋପ ପରେ ତୋପ ଶବ୍ଦ କରିଥିଲା କି ନିସ୍ତବ୍ଧ
ଧ୍ୱଂସର ତାଣ୍ଡବ ଲୀଳା କରିଲ ଅତି
ହେ କ୍ଷତ୍ରୀୟ ରାଜକୁମର
ଏ ରାଜ୍ୟରେ ତୁମ୍ଭ କୀର୍ତ୍ତି ଯଶ ଅପାର ।।
ନିଜକୁ ବାଜି ଲଗାଇ ଇଂରେଜ ଦେଲ ହଟାଇ
ଧନ୍ୟ ତୁମର ମହିମା ହେ ମହାଜ୍ୟୋତି
ମହାନ ସେ ପ୍ରଜାବଳ ପ୍ରଖର ଯୁଦ୍ଧ କୌଶଳ
ଜ୍ଞାନ, ଗୁଣ କେ ବର୍ଣ୍ଣିବ କାହାର ମତି ?
ବିରାଜିତ କ୍ଷତ୍ରୀୟ ଶୋଭା
ଅନୁଗୋଳ ମଧ୍ୟେ ପ୍ରଭୁ ହୋଇଛ ଉଭା ।

ହସ୍ତେ ଧରି ତଲୱାର କରୁଛ ତୁମ୍ଭେ ପ୍ରଚାର
ଉଠରେ କ୍ଷତ୍ରୀୟ କୂଳ ଉଠରେ ଜାଗି
ରହିଅଛି ଅବଶୋଷ ଅନୁଗୋଳ ଇତିହାସ
ଉଠରେ ମୋର ସନ୍ତାନ ହୁଅରେ ଭାଗି
ଉଠ ଉଠ ସନ୍ତାନ ଗଣ
ସୁଶୋଭିତ କର ତୁମ କ୍ଷତ୍ରୀୟପଣ ।
ବୀର ତୁମ୍ଭେ ହେ ରାଜନ ଶତ୍ରୁଙ୍କୁ କରଦମନ
ତୁମ୍ଭ ଆଜ୍ଞାରେ ଚାଳିତ ସଂଗ୍ରାମୀ ଗଣ
ତୁମ୍ଭ ପଥ ଅନୁସରି ଚକରା ବିଶୋଇ ପରି
କେତେ ସଂଗ୍ରାମୀ ଲଭିଲେ କାରାବରଣ
କାହିଁ ହେଲ ହେ ରାଜବନ୍ଦୀ
ହଜାରିବାଗ ଜେଲ୍‌ରେ ହୋଇଲ ଛନ୍ଦି
ଅଠର ଶହ ତେପନେ ଗମିଲ ହେ ବୀରଧାମେ
ମୂର୍ତ୍ତିମନ୍ତ, ଦୟାବନ୍ତ, ମଉଡ଼ମଣି
ହଜାରିବାଗ ଜେଲ୍‌ରେ ନିଦ୍ରାଗଲ ନିଶ୍ଚିନ୍ତରେ
ଗଡ଼ବାସୀ ଝୁରେ ତୁମ୍ଭ ଗୁଣବାହୁନି
ହେ ମହାତ୍ମା ଏହି ମୋ ଭିକ୍ଷା
ସ୍ୱର୍ଗେ ଥାଇ ଅନୁଗୋଳେ କରହେ ରକ୍ଷା ।
ତବ ଚରଣେ ମିନତୀ ଶୁଭ ହେଉ ତବ ଜୟନ୍ତୀ
ଏହି ଅଳି, ମୋହଠାରେ କରିବେ ଦୟା
ଏ ଧର୍ମର ହେଉଜୟ ହେ ପ୍ରଭୁ ମହିମାମୟ
ମୋ ଶିରରେ ପଡୁଥାଉ ତୁମରି ଛାୟା
କର ପଦ୍ମ ଯୋଡ଼ିଣ କହେ
ଅକ୍ଷୟ ଇତିହାସରେ (ତବ) ନାମ ରହୁ ହେ ।

*ଗ୍ରା-ମାଜପଣି, ଜରଡ଼ା, ଜଣିହାଁ*

❋❋❋

# ରାଜା ତ ରାଜା ସୋମନାଥ ସିଂ ରାଜା

ଅନିଲ ଦେହୁରୀ
ସା : ପୋ : ଚମ୍ପତି ମୁଣ୍ଡା, ଅନୁଗୋଳ

ରାଜା, ରାଜା , ରାଜା
ଆମ ସୋମନାଥ ପରି ରାଜା
ନଥିଲେ ଭାରତେ ସନ୍ତାନ ପରାୟେ
ପାଳିବା ପାଇଁ ପରଜା ।।
ପରଜାର ଧନ କରିଣ ଶୋଷଣ ନିଜର କୋଠା ବଢ଼ାଇ
ଆନ ରାଜାମାନେ ରହୁଥିଲେ ସୁଖେ ଜନତାଙ୍କୁ ଦୁଃଖ ଦେଇ
ଭଙ୍ଗାଚାଳ ଘରେ ରହି ସୋମନାଥ
ବିଳାସ କରନ୍ତି ତେଜ୍ୟା ।।୧।।
କବି ପଣ୍ଡିତ ଧାର୍ମିକ ପ୍ରବର ଥିଲେ ଆମ ଅଧୀଶ୍ୱର
ନିଜେ ସହି ଦୁଃଖ ଆନେ ଦେଇ ସୁଖ ଜୀବନ ବିତେ ତାଙ୍କର
ଉତ୍ତମ ଶାସକ ଥିଲେ ସୋମନାଥ
ଉଡ଼ାଇ ବିଜୟ ଧ୍ୱଜା ।।୨।।
ଶେଷ ରକ୍ତ ବିନ୍ଦୁ ଦେଇ ଲଢ଼ିଥିଲେ ସ୍ୱାଧୀନ ରହିବା ପାଇଁ
ଚାଲିଗଲେ ସିନା ଅଫେରା ରାଇଜେ ମଥା ନତ କଲେ ନାହିଁ
ବିଦେଶୀ ଚକିତ ଦେଖି ବୀରପଣ
ଧନ୍ୟ ଅନୁଗୋଳ ରାଜା ।।୩।।
ସ୍ୱାଧୀନ ରାଜନ ସୋମନାଥଙ୍କର ନାହିଁ କେହି ସମକକ୍ଷ
ଇତିହାସ ବକ୍ଷେ ନାହିଁ ତାଙ୍କ ନାମ ଅନୁଗୋଳର ଦୁର୍ଭାଗ୍ୟ
ନକାନ୍ଦିଲେ ପିଲା କି କରିବ ମାତା
ଘର କାମେ ମାରେ ମଜା ।
ରାଜା, ରାଜା, ରାଜା
ଆମ ସୋମନାଥ ପରି ରାଜା ।



# କୃଷ୍ଣଚକ୍ର : ଏକାଦଶ ସର୍ଗ -

ଗୋବିନ୍ଦ ରାଜଗୁରୁ
(ରାଜଗୁରୁ ଅନୁଗୁଳ ଓ ତାଳଚେର)

ଅନୁଗୋଳର କୃଷ୍ଣ ଚକ୍ର ଗଡ଼ ଥିଲା ମହାରାଜାଧିରାଜ ସୋମନାଥ ସିଂହ ମର୍ଦ୍ଦରାଜ ବୀରବର ମହୀନ୍ଦ୍ର ଜଗଦେବଙ୍କ ଶେଷ ରାଜଧାନୀ। ଏ ଦୁର୍ଗ ମହାଭାରତର ଚକ୍ରବ୍ୟୂହ ସଦୃଶ ଦୁର୍ଭେଦ୍ୟ ଓ ଅଗମ୍ୟ ରୂପେ ଏବେବି ବିଦ୍ୟମାନ। ସନ ୧୮୩୧/୩୨ ମସିହା ଠାରୁ ୧୮୫୪ ମସିହା ପର୍ଯ୍ୟନ୍ତ ଅନୁଗୋଳର ରାଜଧାନୀ ହୋଇ ରହିଥିଲା। ଉକ୍ତ ଦୁର୍ଗ ସମ୍ବନ୍ଧେ ବ୍ରିଟିଶ ଗୁପ୍ତଚର ହର୍ଟନ ସାହେବ ତା୧୬/୬/୧୮୪୬ରିଖରେ କଟକ ଇଂରେଜ କମିଶନରଙ୍କୁ ଗୁପ୍ତ ରିପୋର୍ଟ ଦେଇଥିଲେ। କାରଣ ଏ ଦୁର୍ଗରେ ରହି ମହାରାଜା ସୋମନାଥ ସିଂହ ଜଗଦେବ ବ୍ରିଟିଶ ବିରୋଧୀ ସ୍ୱାଧୀନତା ସଂଗ୍ରାମ ଚଳାଇଥିଲେ। ବ୍ରିଟିଶମାନେ ସମଗ୍ର ଭାରତ ବର୍ଷର ରାଜା ମହାରାଜାଙ୍କ ସୈନିକ ଧରି ତା୧୮/୧୨/୧୮୪୭ ରୁ ଅନୁଗୋଳର ଚତୁର୍ଦ୍ଦିଗରୁ ଆକ୍ରମଣ କରି ମାତ୍ର ଏଗାର ଦିନ ଯୁଦ୍ଧରେ ସୋମନାଥ ସିଂହ ଜଗଦେବଙ୍କ ଠାରୁ ପରାସ୍ତ ହୋଇଥିଲେ। ଅନୁଗୋଳ ମହାରାଜାଙ୍କ ଦାନପୂଣ୍ୟରେ ବିଚଳିତ ସ୍ୱର୍ଗର ବ୍ରହ୍ମା ଓ ବୃହସ୍ପତିଙ୍କ କୂଟନୀତି ଯୋଗୁଁ ସୋମନାଥ ସିଂହ ଜଗଦେବ ତା୧/୨/୧୮୪୮ ଦିନ ବ୍ରିଟିଶ୍ କର୍ତ୍ତୃକ ବନ୍ଦୀ ହେଲେ ଓ ତା୨/୬/୧୮୫୩ଦିନ ରାଜବନ୍ଦୀ ଅବସ୍ଥାରେ ବିହାରର ହଜାରୀବାଗ ଠାରେ ଇହଲୀଳା ସମ୍ବରଣ କଲେ। ଇଂରେଜମାନେ ଅନୁଗୋଳର ରାଜକୀର୍ତ୍ତି ଧ୍ୱଂସ କରିଦେଲେ। କୃଷ୍ଣଚକ୍ରଗଡ଼ ଓ ପୁରୁଣାଗଡ଼ରେ ଥିବା ନୃସିଂହ ରାଜଗୁରୁଙ୍କର ବାସଗୃହ ଓ ରାଜଦତ୍ତ ରକବାକୁ ବାଜ୍ୟାପ୍ତ କରି ଅନ୍ୟକୁ ଦେଲେ। ରାଜାଙ୍କ ମରିବା ପର୍ଯ୍ୟନ୍ତ ବୁଢ଼ାପଙ୍କ ଯୁଦ୍ଧ ପୋଥି ନୃସିଂହ ରାଜଗୁରୁ ପୂର୍ବରୁ ଲେଖି ସାରିଥିଲେ। ଏହାର ନକଲ ତଦୀୟ ପୁତ୍ର କମଳ ମିଶ୍ରଙ୍କ ଦ୍ୱାରା ୧୮୨୯ ମସିହାରେ ହୋଇଛି।

## ନଟବାଣୀ

କୁକୁଆର ତ୍ରାସ ଅନୁଗୋଳେ ସୋଟି
ଜନତା ମାନସେ କଲା ଚିନ୍ତା ସୃଷ୍ଟି।
ନୃପ ନ ଆସନ୍ତେ ରାଜ୍ୟକୁ ବାହୁଡ଼ି
କେତେ ସରଦାର ଦୋଷେ ଗଲେ ପଡ଼ି।
ରାଜ୍ୟ ସାରା ଖେଳି ବିମର୍ଷ କାଳିମା
ଲାଗିଲାକି ହୃଦେ କଳୁଷ ନୀଳିମା।
କେଶରୀ ଆସନ ନୋହିଲା ମଣ୍ଡନ
ପରିଗଣିତ ନିଛତ୍ର ପୃଥ୍ୱୀ ଜନ।
ଯୁବରାଜଙ୍କୁ ନଅରପି ରାଜତ୍ୱ
କଳୁଷିତ କଲେ ରାଜାଙ୍କ ମହତ୍ୱ।

ଦର୍ଯ୍ୟିତା ପଡ଼ା କୋଠିରେ ଯୁବରାଜ
ଶ୍ରୀକ୍ଷେତ୍ରେ ଆରପୁରକୁ ହେଲେ ସଜ।
କାଳବଳେ ଆରପୁରେ ଗଲେ ଚଳି
ଭାଳିଲେ ସହଧର୍ମିଣୀ ପଦ୍ମାମାଳୀ।
ଲଲାଟ ଲିଖନ କେ କରିବ ଆନ
ଅଶ୍ୱ ଲାଗି ନଳ କାଟିଥିଲେ ତୃଣ।
ରାଜା ହରିଶ୍ଚନ୍ଦ୍ର ଦାନ ତ୍ରିଭୂବନେ
ପ୍ରକମ୍ପ୍ୟ ଥିଲା ପ୍ରତିକ୍ଷଣେ ଦିନେ।
ଏଡ଼େ ରାଜା ହୋଇ ବିକି ପୁତ୍ର ଭାର୍ଯ୍ୟା
ବିଶ୍ୱାମିତ୍ର ବାକ୍ୟେ ରାଜ୍ୟ କଲେ ତେଜ୍ୟା।

ବାଳୀ ସମ ବୀର ହେଲା ସର୍ବନାଶ
ନାରୀ ଯୋଗୁଁ ମଲେ ରାବଣ ସବଂଶ ।
ପନ୍ନଗବିଷ୍ଣୁ ଯେ ଥିଲା ଦୁର୍ଯ୍ୟୋଧନ
ଯା ଅଂଘ୍ରି ସ୍ପର୍ଶେ ଫୁଟେ ସ୍ୱର୍ଣ୍ଣ ଶ୍ରୀପର୍ଣ୍ଣ ।
ତାକୁ ପୁଣିଥିଲା ବିଧିର ବିଧାନ
ଲକ୍ଷ୍ମୀ କୋଳ ବର୍ଜି ହେଲା ଯାନୁ ଭଗ୍ନ ।
ଭୀମ ତିନି ନାଦ ପାରିଥିଲେ ସହି
ଭୋଗିଥାନ୍ତା ସେହୁ ନିଷ୍କଣ୍ଟକେ ମହୀ ।
ଏଣୁ ଭାଗ୍ୟ ଭୋଗ୍ୟା ଅଟେ ବସୁନ୍ଧରୀ
ହେବ ସେ ସବୁରି ନୋହିବ କାହାରି ।
ଭାଗ୍ୟେ ଥିବାଯାଏ ଥିଲାତ ରାଜତ୍ୱ
ଦୁର୍ଯ୍ୟୋଗେ କଟକ ହେଲା ହତପାତ ।
ଯେହ୍ନେ ମହାସ୍ରୋତ ଆସିବାର ବେଳେ
କାହାକୁ ନଛାଡ଼ି ସବୁ ସେନି ଚଳେ ।
ଶଇଳଠୁଁ ଜୀବ ମହାଦ୍ରୁମ ଯାଏ
ଦେଇ ଘୋର ରାବ ଗର୍ଭେ ସେନି ଧାଏଁ ।
ସମ୍ମୁଖ ପଶ୍ଚାତ ନକରି ବିସ୍ତର
ଦେଖାଏ ସେ ସର୍ବଭୁକ୍‌ର ବେଭାର ।
ଧାଏଁ ଘୋରଦର୍ପେ ରୋଧସକୁ ଜିଣି
ଜବସ ଲତାକି ଛାଡ଼େ ଛୋଟ ମାନି ।
ରାଜାଗଲେ ରାଜ୍ୟ ହେଲା ଛତ୍ରହୀନ
ତଥାପି ନୋହିଲା କୂଟ ଅବସାନ ।
କାଳୀ ଧ୍ୱଂସିଥିଲା ବୋଲି ନନ୍ଦସୁତ
ତାର୍କ୍ଷ୍ୟନାଗକୁଳ କରିଲା ନିପାତ
କାଳୀୟର ଗୋତ୍ର ଭୃତ୍ୟ ଆଦିକରି
କାହାକୁ ନରଖି ଦେଲାକ ସଂହାରି ।
ସେହି ଦଶାପ୍ରାପ୍ତ ହେଲା ଅନୁଗୁଳ
କମ୍ପାନୀର ଦୃଷ୍ଟି ସତ ହଳାହଳ ।

କୃଷ୍ଣଚକ୍ର ରଣୁ ଉବୁରି ଯାଇଣ
ମଙ୍ଗରାଜ ଥିବା ଡଅଁରାର ଗ୍ରାମ ।
ଜାଣିଣ କମ୍ପାନୀ କରିଲା ନିପାତ
ସମ୍ମୁଖ ରଣରେ ହୋଇ କେତେ ହତ ।
ସେଥିରେ ମାନିଲା ନାହିଁ ତାଙ୍କ ମନ
ବୁଢ଼ାପଙ୍କ ଦୁର୍ଗେ ହେଲେ ଧାବମାନ ।
ଚିନ୍ତିଥିଲେ ହୃଦେ ଚତୁରରେ ବଳି
ଦୁର୍ଗାଧ୍ୟକ୍ଷ ଚକ୍ରେ ବୋଳିବାକୁ କାଳି ।
ଦୁର୍ଗେ କଲେ ଗଡ଼ନାୟକ ଦର୍ଶନ
ଚତୁରେ ଖସିଲେ ହୋଇ ସମ୍ମୁଖୀନ ।
ଇଜ୍ଜତ୍ ରକ୍ଷଣେ ଭକ୍ଷିଲେ ଜହର
ନିଇଙ୍କେ ଫେରିଲେ ଖାଇଣ ଠୁକର ।
ଆମ୍ଭଙ୍କୁ ଅର୍ପିଲେ ଲଙ୍କା ପରିଶେଷେ
ରାଜ୍ୟ ହସ୍ତାନ୍ତର କଲେ ବିନାଦୋଷେ ।
ତାହାଙ୍କୁ ଥିଲେଟି ଦଇବ ବୁଝିବ
ବିଅର୍ଥେ କି କ୍ଳେଶ ଭୋଗୁଛି ଏ ଜୀବ
କଲେ ପରମ୍ପରା ଅନୁଯାୟୀ କର୍ମ
ମାଗୁଣି ସିଂହଙ୍କୁ ଅର୍ପି ରାଜଧର୍ମ ।
ଅକାଳ ବିରହ ଯାତନା ଅନଳେ
ସନ୍ତାପିତ ଚିତ୍ତେ ଭାଗ୍ୟର ଅବଳେ ।
ଏକ ରାଜାଙ୍କର କନ୍ୟାପଣେ ଜନ୍ମି
ଅନୁଗୋଳେ ହୋଇଥିଲେ ଯୁବରାଣୀ ।
ଖଟିବାଟୀ ଥିଲା ଦାସୀ ପରିବାରୀ
କାଳେଗଲେ ଦୁଃଖେ କର୍ମକୁ ଆବୋରି ।
ଏ ରୂପେ ବିତିଲା ବରଷ ବରଷ
ଶତ ବର୍ଷ ପରେ ସ୍ୱାଧୀନ ଏ ଦେଶ ।
ରାଜ୍ୟ ସ୍ୱାଧୀନ ହେଲେ ବି କେହି ଦିନେ
କୃଷ୍ଣଚକ୍ରକୁ ନପକାଇଲେ ମନେ ।

ମାଗୁଣି ସିଂହଙ୍କ ପରେ ଯେ ରାଜୁତୀ
କଲେ ବୀରଶୂର ପ୍ରତାପ ନୃପତି ।
ପୁଣି ବୀର କିଶୋର ବ୍ରଜମୋହନ
କ୍ଷମତା ଶୂନ୍ୟେ ହେଲେ ରାଜ୍ୟେ ରାଜନ ।
ହୋଇଲେ ବି ଲୋକମତ ସରକାର
ଜନେ ରାଜା ବୋଲି କରନ୍ତି ସ୍ୱୀକାର ।
ସର୍ବନାଶ ଯା'ର କପୋଳ ଲିଖନ
କି ହୋଇବ ପ୍ରଜା ଅର୍ପିଲେ ସମ୍ମାନ ।
ସୋମନାଥ ସିଂହ ଦିଗ୍‌ବିଜୟ ବାଜା
ରାଜ୍ୟେ ବାଜୁନି ହେଉନି ସୈନ୍ୟ ସଜ୍ଜା ।
ଉଡୁନାହିଁ ଏବେ ବଇରୀ ଦଳନ
ବର୍ଷବର ଧାପେ ପୃଥ୍ୱୀ ବୀରଶୂନ୍ୟ ।
ନାହିଁ ଶରଣ ପଞ୍ଜର ଧ୍ୱଜାସ୍ମୃତି
ସୁକୃତି ବିନାଶି ଆସିଛି ଦୁଷ୍କୃତି ।
ରାଜ୍ୟ ପରିସ୍ଥିତି ନୁହେଁ ଅନୁକୂଳ
ମନ୍ତ୍ରୀ ଶାସନରେ ଲାଗେ ଗଣ୍ଡଗୋଳ ।
ସ୍ୱାଧୀନତା ପାଇଁ ହୃଦେପାଳିବ୍ରତ
ହେଲେ ରାଜବଂଶ ନୋହି ଅନୁସୃତ ।
ଅନୁରୂପ ମଧ୍ୟ ସରଦାର ବଂଶ
ସ୍ୱାଧୀନ ସଂଗ୍ରାମେ ହୋଇଲେ ବିନାଶ ।
ନଶ୍ୱରେ ହେଲେବି କୀରତି ଅମର
ସ୍ମୃତିର ରକ୍ଷଣେ ନାହିଁକା ନଜର ।
ଏଡ଼େ ବଡ଼ ବୀର ନାମ ହୁଏ ଲୋପ
ଭାବିଲେ ହୃଦୟେ ଲାଗଇ ସନ୍ତାପ ।
ତଳପେ ଔଶୀନ କରିଥିଲି ଦିନେ
ନିଶୀଥେ ଦେଖିଲି ଜାଗ୍ରତ ସ୍ୱପନେ ।
ଦୀର୍ଘକାୟ ତେଜୋମୟ ପୁରୁଷେକ
ପ୍ରବେଶିଲେ ପାଖେ ବିଜ୍ଞସମ ଠିକ ।

ବନାରସୀ ପାଟ କରି ପରିଧାନ
ସ୍କନ୍ଧେ ଉତ୍ତରୀ ଉପବୀତ ମଣ୍ଡନ ।
କର୍ଣ୍ଣରେ ବିରାଜେ ଗୃରୁଭୂରିବଲ୍ଲୀ
ରଚିଛି ରଦନ ଭକ୍ଷି ଅହିବଲ୍ଲୀ ।
କପୋଳେ ତିଳକ ଦିଶେ ଶୋଭାବନ
ମଳୟଜ ବାସ ଆସେ ଉଦ୍‌ଭାଷିଣ ।
ଘନସାର ଚୂଆ ହୋଇକି ମିଶ୍ରିତ
ରୁଚିର ଅଙ୍ଗୁ ହୁଏ ବାସ ନିର୍ଗତ ।
ତାମ୍ରକାନ୍ତି ସମ ଅପଘନ ଜ୍ୟୋତି
ତମୀ ହୋଇଲେବି ଜଳି ଉଠୁଛନ୍ତି ।
ପ୍ରସନ୍ନ ଅନ୍ତର ମୁଖଟି ନଳୀନ
ପ୍ରତୀତ ଅତୃପ୍ତ ଥିବାପରି ମନ ।
ଦ୍ୱିସ୍ଫୁଟ ଅନ୍ତରେ ଶୟନ ତଳପେ
ସନ୍ନିକଟେ ଛିଡ଼ା ହୋଇଲେ ସ୍ୱରୂପେ ।
ଅଟକ ଝଟକ ଥିଲା ତାଙ୍କ ବର୍ଣ୍ଣ
ଘଟ-ପାଟ ଉଦୟ ଭାନୁ ବରନ ।
ହୋଇପାଶେ ବୋଲି ଶୁଣ ଆରେ ବାପ
ମୋହର ବିଭୂତି ନକରନ୍ତୁ ଲୋପ ।
ଶୁଭେ ରାୟଗୁରୁ ବଂଶେ ତୋ ଜନମ
ଉଡ଼ାଇବାକୁ ହେଲା କାବ୍ୟ କେତନ ।
ଯେହ୍ନେ ଭାଗୀରଥୀ ବଂଶ ଉଦ୍ଧାରଣେ
ଜନ୍ମି ଶଗର ବଂଶରେ ଶୁଭଲଗ୍ନେ ।
ତପେ ମହାକଷ୍ଟ କରିଣ ସ୍ୱୀକାର
ନିଜେମରି ବଂଶ କରିଲେ ଉଦ୍ଧାର ।
ସେହିପରି ତୁହି କରିବୁରେ ବାବୁ
ଆମ୍ଭ ପୂର୍ବ କୀର୍ତ୍ତି ଉଦ୍ଧାର କରିବୁ
ଭ୍ରମିଯିବୁ ତୁହି କୃଷ୍ଣଚକ୍ର ଦିନେ
ଆମ୍ଭ ବାସ ରମ୍ୟ ଦୁର୍ଗ ଦରଶନେ ।

ନିଶ୍ଚୟ ଜାଗିବ ହୃଦେ ପୂର୍ବସ୍ମୃତି
ରଚିବାକୁ କୃଷ୍ଣଚକ୍ର କାବ୍ୟଗୋଟି ।
ଅତୃପ୍ତ ଆତ୍ମା ଘୁରିବୁଲେ ସେଠାର
ଅପୂର୍ଣ୍ଣ ଆଶାରେ ସରଦାରଙ୍କର ।
ପ୍ରାସାଦଟି ମଧ୍ୟ ଯାଇଥିଲେ ଭାଙ୍ଗି
ରାଜା ଇଷ୍ଟଦେବୀ ଦୁର୍ଗ ଅଛି ଜଗି ।
ନୃପଙ୍କୁ ହରାଇ କାନ୍ଦୁଛି ପ୍ରକୃତି
ବାଣିନୀ ପରାୟେ କରି ମତିଗତି ।
ମହୀନ୍ଦ୍ର ଭବନ ଭଜୁଅଛି ସ୍ତୁପ
ନିଶ୍ଚିହ୍ନ ହୋଇଣ ହେବଦିନେ ଲୋପ ।
ରାଜ ପାରିଷଦେ ଥିଲା ଯାହା ପୂର୍ଣ୍ଣ
ଏବେ ହୋଇଛି ଅନାର୍ଯ୍ୟ ବାସସ୍ଥାନ ।
ଏତେ ବୋଲିଣ ଧରିଣ ବେଣୁପର୍ଣ୍ଣ
ପୂର୍ବ ଇତିହାସ କରିଲେ ବର୍ଣ୍ଣନ ।
ଏକାଳେ ଶର୍ବରୀ ହେବା ଦେଖି ଶେଷ
ବୋଇଲେ ବାବୁରେ ଚଳୁଛି ମୋ ବାସ ।
ଏତେ କହି ପାଶୁ ହେଲେ ଅନ୍ତର୍ଦ୍ଧାନ
ଫେଡ଼ନ୍ତେ ନୟନ ଦେଖିଲି ମୁଁ ଶୂନ୍ୟ ।
ଭାବିଲେ କାଳଙ୍କ ପାହିଲା ରଜନୀ
ପ୍ରାଚୀନଭେ ଉଦେ ହେଲେ ଦିନମଣି ।
ପିତାଙ୍କ ସାନ୍ନିଧ୍ୟେ ସ୍ୱପନ ବୃତ୍ତାନ୍ତ
କରିଲି ପ୍ରକାଶ ଦେଖିଲି ଯେମନ୍ତ ।
ଶୁଣିପିତା କଲେ ମୋତେ ଆଲିଙ୍ଗନ
କହିଲେ ବାବୁରେ ଧନ୍ୟ ତୋ ଜୀବନ ।
ଦେଖିଲୁ କବିଚନ୍ଦ୍ରଙ୍କୁ ତୁହି ଯେବେ
ତୋର ପୂର୍ବ ଜନ୍ମ ତପର ପ୍ରଭାବେ ।
ତାଙ୍କ ଆଦେଶ ଶୀଘ୍ର କର ପାଳନ
ଏହି ଅନୁମତି କରୁଛି ପ୍ରଦାନ ।

ଶୁଣିଣ ମନସ୍ଥ କରିଲି ମୁଁ ଦିନେ
ଯିବି କୃଷ୍ଣଚକ୍ର ଦୁର୍ଗ ଦରଶନେ ।
କେବେ ସେ ସୁଯୋଗ ଜୀବନେ ଆସିବ
ସ୍ୱପନ ଦର୍ଶନ ହୋଇବ ବାସ୍ତବ ।
ଏ ରୂପେ ବିତିଲା ଦିବସ ଦିବସ
ମାସ ପରେ ମାସ ବର୍ଷ ପରେ ବର୍ଷ ।
ସେ ସୌଭାଗ୍ୟ କିନ୍ତୁ ନ ଯୁଟିଲା କେବେ
ଯିବା ଲାଗି ଦରଶନେ ଦୁର୍ଗଠାବେ ।
ପୁଣି ଦେଖିଲି ମୁଁ ପୂରୁବ ସ୍ୱପନ
ଏଥର ଅସ୍ଥିର ଲଭିଲାକ ମନ ।
ଭାବିଲି ଦୁର୍ଗକୁ ଚଳିବି କିପରି
ତା' ବକ୍ଷେ ଭ୍ରମି ଦେଖିବି ଗ୍ରୁରୁଣିରୀ ।
ଚିନ୍ତିତ ମାନସେ ଦିନେ ଅନୁଗୋଳେ
ଭ୍ରମୁଛି ବିପିଣୀ ମଧ୍ୟେ ସାଂୟ କାଳେ ।
ଏହି କାଳରେ ମିଳିଲେ 'ସାବଧାନ'
ଶ୍ରୀ ନିମାଇଁ ସ୍ୱାଇଁ କ୍ଷତ୍ରୀୟ ନନ୍ଦନ ।
କରି କୋରକିତ କରିଲେ ପ୍ରକାଶ
କୁହ କିମ୍ପା ମନ ଦିଶଇ ବିରସ ।
ଏହା ଶୁଣି ମୁହିଁ ସକଳ ବୃତ୍ତାନ୍ତ
କରନ୍ତେ ବର୍ଣ୍ଣନା କହିଲେ ନଚିନ୍ତ ।
ଏ ଛାର କଥାକୁ ଏକି ଭାବମନ
କାଲି କରିବା କୃଷ୍ଣଚକ୍ର ଦର୍ଶନ ।
ରହିଲି ନିଶୀଥେ ସେ କହିବା ମତେ
ଚଳିଲୁ ସତରେ ସମସ୍ତେ ପ୍ରଭାତେ ।
ଏଥର ଆତ୍ମାଟି ଲଭିଲା ସନ୍ତୋଷ
ବିଷର୍ଣ୍ଣ ମୁଖ ଦିଶିଲା ହସ ହସ ।
ଦୁର୍ଭେଦ୍ୟ କାନ୍ତାର ପଥ ଅତିକ୍ରମି
କୁଲୁଣରୁ ଗଲୁ କୃଷ୍ଣଚକ୍ର ଭୂମି ।

ରାଜାଙ୍କ ସମ୍ବନ୍ଧେ କଥାବାର୍ତ୍ତା ହୋଇ
ଚଳିଲୁ ପଥରେ ନାନା ଗୀତ ଗାଇ ।
ଚନ୍ଦ୍ରିମା ଦୁଆର ଘାଟି ଅତିକ୍ରମି
ଦେଖିଲୁ କୃଷ୍ଣ ଚକ୍ରକୁ ଭ୍ରମି ଭ୍ରମି ।
ପ୍ରକୃତି ରାଣୀର ଅସଜଡ଼ା ବେଶ
ଚକ୍ରବାଳ କିରୀଟେ ରାଜ ଉଆସ ।
ନିଖୁଣ ପାବଛ ଚଟାଣ ପ୍ରାଚୀର
ନାନା ପ୍ରତିମୂର୍ତ୍ତିର ଅଙ୍କା ପ୍ରସ୍ତର ।
ବିରାଜୁଛି ବିକ୍ଷୀ ମାଳ ମାଳ ହୋଇ
ଘେରିବା ପର୍ବତ ଶୋଭା ନୁହେଁ କହି ।
ସ୍ୱପନ ଦର୍ଶନ କବିଙ୍କ ନିର୍ଦ୍ଦେଶେ
ବାସ୍ତବ ବୋଲିଣ ମାନିଲା ମାନସ ।
କି ଥିଲା ଏ ସ୍ଥାନ କି ଘଟିଛି ଆଜ
କେ ଜାଣିଛି ତଥ୍ୟ ଏ ସଭ୍ୟ ସମାଜ ।
କାଳଗର୍ଭେ ସ୍ମୃତି ଲିଭୁଛି ଏହାର
ଯା'ର ଖ୍ୟାତି ଥିଲା ଅତି ଚମତ୍କାର ।
ବାଜୁଥିଲା ବକ୍ଷେ ଯା'ର ବୀର ବାଜା
ପ୍ରତିବେଳ ଲାଗିଥିଲା ସୈନ୍ୟ ସଜ୍ଜା ।
ଲାଗିଥିଲା ପୁଣି ଜନ ସମାଗମ
ଉଡୁଥିଲା କେତେ ରାଜଧ୍ୱଜା ବ୍ୟୋମ ।
ଗୁଡୁମ ଗୁଡୁମ ଫୁଟୁଥିଲା ତୋପ
ଲାଗିଥିଲା କେତେ ବୀରଙ୍କ ପ୍ରତାପ ।
ହ୍ରେଷାରବ ପୁଣି ଜନ କୋଳାହଳ
କମ୍ପୁଥିଲା ବୀରନାଦେ ନଭସ୍ଥଳ ।
ହେଉଥିଲା କେତେ ମାଗଧଙ୍କ ସ୍ତୁତି
ନୃପ ଗୁଣଗାନ ଅମର କୀରତି ।
ଶରଣ ଜନଙ୍କୁ ଅଭୟ ପ୍ରଦାନ
ଦୁଃଖୀ ଦରିଦ୍ରଙ୍କୁ ଅରପଣ ଧନ ।

କେ ବୋଲାଏ ଦାନୀ ମାନୀ କେ ସାମନ୍ତ
କେ ସର୍ଦ୍ଦାର କେ ପ୍ରଧାନ ବୁଦ୍ଧିମନ୍ତ ।
ବିରାଟ ଉପାଧିରେ ହୋଇ ଭୂଷଣ
କେତେ ଦର୍ପେ କରୁନଥିଲେ ଭାଷଣ ।
କେତେ ବୀର ଏହି ଧୂଳି କଣା ସଙ୍ଗେ
ମିଶିଛନ୍ତି ଲଢ଼ି ବୀରର ପ୍ରସଙ୍ଗେ ।
ଧୂଳି ମାଟି ଯା'ର ବୀର ରକ୍ତେ ଶିକ୍ତ
ବୀର ପାଦଘାତ ସହି ବକ୍ଷ ଶକ୍ତ ।
କେହୁ କହୁଥିଲା ମୋ ଠାରୁ କେ ବୀର
ବାହାସ୍ଫୋଟ ମାରି ନିଶେ ଦେଇ କର ।
ଗୃହିଁଲେ ନିମିଷେ ମୁଁ କି କରିପାରେ
ଜାଣନ୍ତି ସମର ଅଙ୍ଗନରେ ବୀରେ ।
ଅରାତି ସଇନ ଛାଉଣୀ ଛାର୍ଓଣୀ
ଚିର ନିଦ୍ରାଯିବା କେ କହିବ ଗଣି ।
ସେହି କୃଷ୍ଣଚକ୍ର ରହିଛୁ ତୁ ଆଜି
ବିଗତ ଗରିମା ଯାଇଛି ତୋ ଭାଜି ।
କେତେ ଲାଗି ନଥିଲା ଯିବା ଆସିବା
ଜନ ସମାଗମ ତୋ ବକ୍ଷରେ ଅବା
କେତେ ହେଉ ନଥିଲା ଅଶ୍ୱ ଦଉଡ଼
ବାଜୁ ନଥିଲା ଏଥି କେତେ ଲାଗୁଡ଼ ।
ପୁଣି କବିଚନ୍ଦ୍ର ଲାଟ୍ ନରସିଂହ
ରାୟଗୁରୁ କାବ୍ୟ ଶୁଣୁ ତୁ ପ୍ରତ୍ୟହ ।
ବ୍ରଜବନ୍ଧୁ- କୃଷ୍ଣ ଚନ୍ଦ୍ର- ହରିହର
ରାମକୃଷ୍ଣ ବ୍ରହ୍ମା ବିଦ୍ୱାନ ଆବର ।
ପାଇଣ କବି ପୁରୋଧା ଜ୍ଞାନୀ ଜନ
ବିଦୂଷ ନୀଳକଣ୍ଠ ପାଇଚୁ ଧନ୍ୟ ।
ଏମାନେ ତୋ ପରେ କରୁଥିଲେ ସଭା
ଯାଇଛି ଗୁଳି ତା ଦିଶୁଛି ଅଶୋଭା ।

କିଏବା ବୁଝିବ ତୋ ଅନ୍ତର କ୍ଲେଶ
ରାଜଛତ୍ର ହୀନେ ପୃଥ୍ୱୀ ସର୍ବନାଶ ।
ଅନୁରୂପ କବିଚନ୍ଦ୍ର ବଂଶ ଦଶା
ତୋ ଦୁଃଖ ଲିଖନେ ନାହିଁ କବି ଭାଷା ।
ଭାଜି କୃଷ୍ଣ ଚକ୍ର ତୋ ବୀର ସଦନ
ନିର୍ମାଣର ସ୍ଥାନେ କ୍ରମେ ହେଉ ଲୀନ ।
ଏବେ ଜନ ସମାଜେ ତୁ ଅଗୋଚର
ଭୁଲିଲେଣି ଶତ୍ରୁପକ୍ଷ ନାମ ତୋର ।
ରାଜା ଗଲାପରେ ତୋର ଏ ଦୁର୍ଦ୍ଦଶା
ହେବ ବୋଲି କିଏ କରିଥିଲା ଆଶା ।
କିନ୍ତୁ ଧୂଳିମାଟି ଦିଏ ତୋ ଜବାବ
ଅରାତି ପକ୍ଷକୁ ରଣର ତାଣ୍ଡବ ।
ଏବେ ତୋ ଦଶାରୁ ଆମ ଦଶା ବଳି
ଲେଖନୀ ବିଷାଦେ ନପାରୁଛି ଗୃଳି ।
ଦୁଃଖ ଗୁରୁଙ୍କର ହୋଇ ପଟ୍ଟଶିଷ୍ୟ
ସୁଖ ବରକିଣ ମିଳିଛି ନୈରାଶ୍ୟ ।
ଚିନ୍ତିତ ମାନସେ ଶୟନେ ସ୍ୱପନେ
ମରୁ ପରିଣତ ନନ୍ଦନ କାନନେ ।
ଏ କଳ୍ପନା ଯେବେ ହୁଅନ୍ତା ବାସ୍ତବ
ମିଳନ୍ତା ମୋ କବି ଜୀବନେ ବିଭବ ।
ଜାଣିବ କିଏବା ଅନ୍ତର ବେଦନା
ମନ୍ତ୍ରୀକି ବୁଝିବେ ରାଜାଙ୍କର ବିନା ।
ମଣିମୂଲ୍ୟ କାହୁଁ ଜାଣିବ ପୁଳିନ୍ଦ
ଗୁଞ୍ଜ ଗୁଚ୍ଛରେ ଯେହ୍ନୁ ଲଭେ ଆନନ୍ଦ ।
ପୁରଟ ବରକିଣ ବେଙ୍ଗି ପିତ୍ତଳ
ସମାଜେ ଆଦର ଲାଗିଛି କେବଳ ।
ଏପରି ସମାଜରେ କେଉଁଠି ସ୍ଥାନ
ନୀଚ ହେଲେ ଉଚ୍ଚ ଜାଣେ କି ସମ୍ମାନ ।
ନଥାଏ ଯାହାର ବଂଶ ପରମ୍ପରା
କ୍ଷମତା ପାଇଲେ ଧରାମଣେ ସରା ।
ସମାଜରେ ଯେବେ ଏ ହୁଅନ୍ତି ବଡ଼
ବଡ଼ କି କହିବା ସାନ କଥା ଛାଡ଼ ।
କି କହିବା ତାଙ୍କ ପ୍ରଭୁତ୍ୱ ବିସ୍ତାର
ନ କହିବା ଭଲ କହିଲେ ଦୁସ୍ତର ।
ଶେଷେ କୃଷ୍ଣଚକ୍ର ଶୁଣ ଅବତୋଷେ
କରୁଛି ପ୍ରକାଶ ଏ କ୍ଷୁଦ୍ର ମାନସେ ।
ବୀର ଅନୁଗୋଳେ ତୁହି ମୂକସାକ୍ଷୀ
କହିବ ଯେ ଥରେ ଯିବ ତୋତେ ଦେଖି ।
ସୋମନାଥ ରାଜାଙ୍କର ତୁହି ଗର୍ବ
ବିଭବ ଅନୁକୂଳର ତୁହି ସର୍ବ ।
ଚକ୍ରବ୍ୟୂହ ଭାବେ କୃଷ୍ଣଚକ୍ର ଗଡ଼
ଅରାତି ନାଶନେ ନାମଥିଲା ବଡ଼ ।
ନୃସିଂହ ରାଜଗୁରୁଙ୍କର ପ୍ରମାଣ
ଭାରତ ସମରେ ଯଥା ଗୁରୁଦ୍ରୋଣ ।
ରଖି ଯାଇଛନ୍ତି ଅମର କୀରତି
ଧ୍ୱଂସ ହେଲେ ସୁଦ୍ଧା ରହିଥିବ ସ୍ମୃତି ।
ଇତିହାସ ପୃଷ୍ଠା କରିଣ ମଣ୍ଡନ
ବୋଲେ ରାଜଗୁରୁ ହେବୁ ଚିରନ୍ତନ ।

ରାଜଗୁରୁ ଭବନ, ଅନୁଗୋଳ
ସା - କୃଷ୍ଣଚନ୍ଦ୍ରପୁର ଶାସନ (କେନ୍ଦୁପଲ୍ଲୀ)
ପୋ : ବଳରାମପ୍ରସାଦ, ଭାୟା : ବଅଁରପାଳ,
ଅନୁଗୋଳ

ଓଡ଼ିଶା ସଂସ୍କୃତି ବିଭାଗର ଆଂଶିକ ସାହାଯ୍ୟରେ
୧୯୮୩ରେ ପ୍ରକାଶିତ ।

## ବିଧିଲିପି

### (ଚାଉଳ ମୁଠେ ପାଇଁ ରାଣୀଙ୍କ ଆବେଦନ)

ତା.୧୫.୦୨.୧୮୪୮ ମସିହାରେ ରାଜା କଟକରେ ପହଞ୍ଚି ରାଜବନ୍ଦୀ ଭାବରେ ଗୋଟିଏ ଭଡ଼ାଘରେ ରହିଲେ... । ରାଜା ତ ଗଲେ । ତାଙ୍କ ସଙ୍ଗରେ ପାଞ୍ଚଜଣ ରାଣୀ ମଧ୍ୟ ଯାଇଥିଲେ । ଆଉ କେତେ ଜଣ ରାଣୀ କୃଷ୍ଣଚକ୍ରରେ ଥିଲେ । କୃଷ୍ଣଚକ୍ରର ଭାରପ୍ରାପ୍ତ ମିଲିଟାରୀ ଅଫିସର Capt.Dent.ତେତେବେଳର ଅନୁଗୋ ଦଖଲରେ ଥିବା ବଡ଼ ମିଲିଟାରୀ ଅଫିସରଙ୍କ ପାଖକୁ ତା.୨୫.୦୨.୧୮୪୮ରେ ଖଣ୍ଡିଏ ପତ୍ର ଲେଖିଥିଲେ । ଏ ପତ୍ର ଖଣ୍ଡ ଅତି କରୁଣ । ଏହି ଅଫିସରଟିର ତାଙ୍କର କଠୋର ମିଲିଟାରୀ କାର୍ଯ୍ୟ ମଧ୍ୟରେ ସୁଦ୍ଧା ଟିକିଏ ହୃଦୟ ଥିଲା ପରି ମନେ ହୁଏ । ସେ ପତ୍ରର କେତେକ ଅଂଶ .....I beg to mention that the Ranee made an application to me the day before yesterday for permission to take out of the Malkhana some tabacco and rice etc. for the use of herself and her house hold and considering from whom the request came I deemed myself authorised to supply her wants therefrom. Trusting this will meet the apploval of the officer commaning .....

କାଲି ମୁଠା ମୁଠା ଟଙ୍କା ସୁନାଃ ଧନ ଯିଏ ଫିଙ୍ଗା ଫୋପଡ଼ା କରି ଦେଉଥିଲେ ମଧ୍ୟ ଯାହାକୁ କେହି କହିବାକୁ ନଥିଲେ ଆଜି ପୁଣି ସେହି ଲୋକକୁ ନିଜର ବ୍ୟବହାର ନିମିତ୍ତ ମୁଠାଏ ଚାଉଳ ଖଣ୍ଡ କେତେ ଧୂଆଁପତ୍ର ପାଇଁ ମଧ୍ୟ ମୁହଁ ଖୋଲି ପରକୁ ମାଗିବାକୁ ପଡ଼ିଲା, ଏହା ଠାରୁ ବଳି ଅଧିକ ଦୁଃଖର ବିଷୟ ଅଧିକ ପରିତାପର ବିଷୟ ଆଉ କଣ ହୋଇପାରେ ? ବିଧିଲିପି!!

କବିଚନ୍ଦ୍ର

ସଂକଳନ - କମିଶନର ସୁଧାକର ପଟ୍ଟନାୟକ

**ଡ଼ଃ କୃପାସିନ୍ଧୁ ଭୁକ୍ତା**

**ଶ୍ରୀ ଗୋପାଳ ଚନ୍ଦ୍ର ପ୍ରଧାନ**

**ରତ୍ନାକର ନାୟକ(ବାଇଡ଼ଙ୍କ)**

**ଆନନ୍ଦ ଚନ୍ଦ୍ର ପ୍ରଧାନ**

# ଦେଶହିତୈଶୀ ରତ୍ନାକର : ଏକ ଦୃଷ୍ଟିପାତ

ଡକ୍ଟର ସନତ କୁମାର ମିଶ୍ର

ରତ୍ନାକର ନାୟକଙ୍କୁ କେବଳ 'ବାଇଡ଼ଙ୍କ' ପତ୍ରିକାର ପ୍ରତିଷ୍ଠାତା ସଂପାଦକ ଭାବେ ଉଲ୍ଲେଖ କଲେ, ତାଙ୍କ ଭିତରେ ଥିବା ଭୂୟୋଦର୍ଶୀ ଭବ୍ୟ ପୁରୁଷଟିକୁ ଚିହ୍ନିହୁଏ ନାହିଁ । ତାଙ୍କୁ ଦେଖିଛି ଆଶୈଶବ, ଜାଣିଛି ସେ ଥିଲେ ସହଜାତବୋଧ ବୁଦ୍ଧି ପ୍ରତିଭାର ଅତୁଳ ଅଧିକାରୀ । ତାଙ୍କ ଚରିତ୍ରର ଚିନ୍ତାଶୀଳ ଦିଗ, ତାଙ୍କ ମତାଦର୍ଶ, ମୂଲ୍ୟବୋଧ ବେଦନା, ଯନ୍ତ୍ରଣା, ତାଙ୍କ ଅତୃପ୍ତି, ଅଶାନ୍ତି, ଅସ୍ଥିରତା, ଭାବନାର ବ୍ୟାପ୍ତି, ଅନୁଭୂତିର ତୀବ୍ରତା, ସମାଜ ସଂସ୍କୃତି ସଚେତନ ବାସ୍ତବ ସଂଗେ ଆଦର୍ଶର ସଂଘାତରେ ଜର୍ଜରିତ ତାଙ୍କ ଭାରାକ୍ରାନ୍ତ ମନ ସଂଗେ ମୋର କଲେଜ ଜୀବନରୁ ପରିଚୟ । ଜଣେ ଦିଗ୍‌ଦ୍ରଷ୍ଟା ସାମ୍ବାଦିକ ଏବଂ ସାରସ୍ୱତ ସାଧନାରେ ସେ ଥିଲେ ମୋର ଦିଗ୍‌ଦର୍ଶକ । ତାଙ୍କରି ପ୍ରେରଣାରେ ଛାତ୍ର ଜୀବନରୁ ବାଇଡ଼ଙ୍କ ପତ୍ରିକାରେ ମୁଁ କବିତା, ରମ୍ୟରଚନା ଓ ପ୍ରବନ୍ଧାଦି ଲେଖିଛି । ସ୍ୱାଧୀନତା ସଂଗ୍ରାମ ସାରି ତାଙ୍କର ବିଦ୍ରୋହୀ, ରଣକ୍ଳାନ୍ତ ମନ ଶାନ୍ତ ହୋଇନଥିଲା । ସ୍ୱାଧୀନତାର ସ୍ୱପ୍ନ ଭଙ୍ଗ ପରେ ଉତ୍ପୀଡ଼ିତର କ୍ରନ୍ଦନ ରୋଳ ତାଙ୍କ ପ୍ରାଣ ପୁରୁଷକୁ ଥରାଇଦେଲା... । ସତେ ଯେମିତି ସେ ସାଜିଥିଲେ ଉଦାସର ଉନ୍ମନ ମନ, ଗୃହହରା ପଥିକର ବ୍ୟଥିତ ବ୍ୟଥା, ଅବମାନିତର ମର୍ମବେଦନା ଆଉ ଚିରକ୍ଷୁବ୍ଧ ହୃଦୟର କାତରତା । ସମାଜ, ରାଷ୍ଟ୍ର ଧର୍ମର ସଂସ୍କାର ଉଦ୍ଦେଶ୍ୟରେ ଗୁଡି ଥିଲା ତାଙ୍କ ଲେଖନୀ, ଖରସ୍ରୋତା ଚିନ୍ତାଧାରାରେ ଯତିପାତ କେବେ ଘଟିନଥିଲା ତାଙ୍କର, ତେବେ ତାଙ୍କ ବାହ୍ୟ ରୂପଟି ଥିଲା ଯତିହୀନ । ବିଶୃଙ୍ଖଳିତ କେଶରାଶି, ବାଇଡ଼ଙ୍କ ଫଡ଼ାପରି ଧାରୁଆ ନିଶ ଏବଂ ଖଦଡ଼ ଧୋତି ପଞ୍ଜାବି ପରିହିତ ଦୀର୍ଘଦେହୀ ସେ ମଣିଷଟି ଥିଲେ ଏକ ପୃଥକ, ସ୍ୱତନ୍ତ୍ର ମାନସିକତାରେ ଗଢ଼ା ଜଣେ ସଚ୍ଚୋଟ, ସ୍ପଷ୍ଟବାଦୀ ସ୍ୱଦେଶବତ୍ସଳ ଚିନ୍ତାନାୟକ ।

ରତ୍ନାକର ସଂଗ୍ରାମୀ ମଣିଷ । ୧୯୧୭ ମସିହାରେ ଋଷ୍ ଦେଶରେ 'ବଲସେଲଭିକ୍' ବିପ୍ଳବର ସଫଳତା ପରେ ଯେଉଁ ସାମ୍ୟବାଦୀ ଚିନ୍ତାଧାରା ଓଡ଼ିଶାରେ ଭଗବତୀ ଚରଣ ପାଣିଗ୍ରାହୀ ପ୍ରମୁଖଙ୍କୁ ଆଲୋଡ଼ିତ କରିଥିଲା ତାର ସ୍ପନ୍ଦନ ଜାଗିଥିଲା ତାଙ୍କ ଛାତିରେ । ସବୁଥିରୁ ବଞ୍ଚିତ, ଅବହେଳିତ, ଭୟଭୀତ, ଅସହାୟ, ଅଶିକ୍ଷିତ ମଣିଷଙ୍କୁ ଜାଗ୍ରତ କରିବାର ଯୁଦ୍ଧ ଶପଥ ନେଇ ସ୍ୱାଧୀନତା ପ୍ରାକ୍‌କାଳରୁ ସେ ପ୍ରକାଶ କରିଥିଲେ ବାଇଡ଼ଙ୍କ । ସେହି ସୂତ୍ରରେ ସ୍ୱାଧୀନ ଭାରତର କୁଶାସନ ବିରୁଦ୍ଧରେ ହୋଇଥିଲେ

ବକ୍ରମୁଦ୍ୟତ ହସ୍ତ... ଦିନେ ବାଇଡ଼ଙ୍କ ଅଫିସ୍‌ରେ ଉଭୟେ କାର୍ଯ୍ୟରତ ଥିବା ଅବସ୍ଥାରେ କଥା ପ୍ରସଙ୍ଗରେ କହିଲେ, ନେପୋଲିଅନ ସମ୍ବାଦ ପତ୍ରକୁ ରାଷ୍ଟ୍ରର ଚତୁର୍ଥ ଶକ୍ତି ବୋଲି ଅଭିହିତ କରିଛନ୍ତି ଏବଂ କହିଛନ୍ତି ଯେ ଯଦି ତାଙ୍କୁ ଏକ ଜନପ୍ରିୟ ପତ୍ରିକା ଦିଆଯାଏ ତେବେ ସେ ଏକ ରାଜ୍ୟ ଜୟ କରିପାରିବେ। ଏପରି ମନ୍ତବ୍ୟ ସହିତ ତାଙ୍କର ଚାରିତ୍ରିକ ବୈଶିଷ୍ଟ୍ୟକୁ ମନେ ମନେ ତାରିଫ୍ କରିଥଇଲି ସେଦିନ। ଜାଣିଲି ବାଇଡ଼ଙ୍କୁକୁ ଜନପ୍ରିୟ କରାଇବାରେ ତାଙ୍କର ଦୃଢ଼ ନିଷ୍ଠା, ତଲ୍ଲୀନତା ଓ ପ୍ରତିଶ୍ରୁତିବଦ୍ଧତା। ସେହି ପରିପ୍ରେକ୍ଷୀରେ ତାଙ୍କ ଲେଖାର ଅନ୍ୟତମ ଆକର୍ଷଣ ହେଉଛି ତାଙ୍କର ରଚନା ଶୈଳୀ। ସୁନିର୍ବାଚିତ ତଥା ସାବଲୀଳ ଶବ୍ଦ ଚୟନ କରି ଯାହା ଲେଖୁଥିଲେ ତାର ଏକ ସଞ୍ଚରଣଶୀଳ ଶକ୍ତି ଥିଲା ଯାହା ପାଠକର ଅନ୍ତରକୁ ଭେଦ କରୁଥିଲା। ଫଳରେ ବାଇଡ଼ଙ୍କ ପଲ୍ଲୀରୁ ଦିଲ୍ଲୀ ପର୍ଯ୍ୟନ୍ତ ତାର ପ୍ରଭାବ ବିସ୍ତାର କରିଥିଲା। ପ୍ରଚଣ୍ଡ ପ୍ରଜ୍ଞା ଓ ଅଦମ୍ୟ ବ୍ୟକ୍ତି ସତ୍ତାର ଅଧିକାରୀ ରତ୍ନାକର ଏହିପରି ତାଙ୍କର ରଚନାରେ ସମଗ୍ର ଭାରତର ପ୍ରତିଚ୍ଛବିକୁ ଆକଳନ କରି ଅଗଣିତ ଜନତାଙ୍କ ହୃଦୟକୁ ଆଲୋଡ଼ିତ କରିଥିଲେ।

ରତ୍ନାକର ଆଦର୍ଶ ମଣିଷ। ପରିବାର ତଥା ଆପଣାର ସୁଖ ସୁବିଧା ପ୍ରତି ଦୃଷ୍ଟି ନଦେଇ ମାନବ କଲ୍ୟାଣ ସାଧନ ପାଇଁ ନିର୍ମଳ ପବିତ୍ର କର୍ମ ଭିତରେ ସେ ନିଜକୁ ନିମଜ୍ଜିତ କରି ରଖିଥିଲେ। ଆପଣାର ସ୍ୱାସ୍ଥ୍ୟ, ସମ୍ପଦ, ବୁଦ୍ଧି, ହୃଦୟ ଓ ଆତ୍ମାକୁ ସେ ମାନବିକ ମୂଲ୍ୟବୋଧର ସୁରକ୍ଷା ଓ ସଂରକ୍ଷଣ ପାଇଁ ବିନିଯୋଗ କରିଥିଲେ। ନିଜକୁ ନିଜେ ଅନୁଭବ କରୁଥିଲେ ଅତି ସାମାନ୍ୟ - ଅତି ତୁଚ୍ଛ -" ଦେଶବାସୀଙ୍କ ସେବକ। "ଶାରୀରିକ ମାନସିକ ଉଭୟ ଶକ୍ତିକୁ ଲଗାଇଥିଲି ଦେଶଦଶର ହିତ ପାଇଁ। ... ତେତିଶ କୋଟି ଦେବତା ବଦଳରେ ତେତିଶି କୋଟି ଲୋକଙ୍କୁ କରି ନେଇଥିଲି ନିଜର।" (ଦ୍ର. : ସେଦିନର ଶିବିର ଫେରନ୍ତା (୨) ବାଇଡ଼ଙ୍କ, ଅକ୍ଟୋବର ୧୯୬୫) କେଡ଼େ ଅହଂଭାବ ଶୂନ୍ୟ ଏଇ ଉଚ୍ଚାରଣ, କେଡ଼େ ନିରଭିମାନ ଏହି ଅଭିବ୍ୟକ୍ତି, ଆଜି ଭାବି ବସିଲେ, ବିସ୍ମିତ ହେବାକୁ ପଡ଼େ।

ଅମଲାପଡ଼ା, ଗାନ୍ଧୀମାର୍ଗ, ଅନୁଗୁଳ-୭୫୯ ୧୨୨

ବି.ଦ୍ର. : ଅନୁଗୁଳ ଚାରିଜଣ ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ମଧ୍ୟରେ ଅନ୍ୟତମ। ଅନୁଗୁଳ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପାଠ ଛାଡ଼ି ୧୯୩୦ରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ମାଡ଼ ଓ ଜେଲ୍ ଭୋଗିଥିଲେ। ବାଗଡ଼ିଆରେ ପ୍ରଥମ ବେସରକାରୀ ହୋମିଓ ଚିକିତ୍ସାଳୟ (ଦାତବ୍ୟ) ପ୍ରତିଷ୍ଠା କରିଥିଲେ। ଡ଼ଃ. ରତ୍ନାକର ନାୟକ/ ଅନୁଗୋଳର ପ୍ରଥମ 'ଅନୁଗୋଳ' ପ୍ରେସ୍ ର ପ୍ରତିଷ୍ଠାତା/ ବାଇଡ଼ଙ୍କ ପତ୍ରିକା ବ୍ୟତୀତ ସେ ଅନେକ କାବ୍ୟ ରଚନା କରିଥିଲେ। ସଂଗ୍ରାମୀ ସାଥି ଆନନ୍ଦ ପ୍ରଧାନଙ୍କ ସହିତ ମିଶି ବାଗଡ଼ିଆ **M.E. Schhos/H.E. School**ପ୍ରତିଷ୍ଠାରେ ସେ ଅନ୍ୟତମ ଅଗ୍ରଣୀ।

-ସମ୍ପାଦକ





# ସ୍ୱାଧୀନତା ସଂଗ୍ରାମୀ ଆନନ୍ଦ ଚନ୍ଦ୍ର ପ୍ରଧାନ

ପିତାଙ୍କ ନାମ : ବେଢ଼ା ପ୍ରଧାନ, ମାତାଙ୍କ ନାମ : ପାଟ ପ୍ରଧାନ
ଗ୍ରାମ : ବାଗଡ଼ିଆ, ଜିଲ୍ଲା : ଅନୁଗୋଳ

ଭାରତର ସ୍ୱାଧୀନତା ଆନ୍ଦୋଳନ ପାଇଁ ମହାତ୍ମାଗାନ୍ଧୀଙ୍କ ଡ଼ାକରାରେ ଛାତ୍ର ଜୀବନରୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରିବା ସଂଗେ ସଂଗେ ଓଡ଼ିଶାର ଗଡ଼ଜାତ ଆନ୍ଦୋଳନ ସମୟରେ ସ୍ୱେଚ୍ଛାସେବୀ ଭାବେ ସହଯୋଗ - (କୋଶଳା କ୍ୟାମ୍ପ ଏବଂ କମସଲା କ୍ୟାମ୍ପ)

ସ୍ନ ୧୯୩୦ମସିହା "ଲବଣ ସତ୍ୟାଗ୍ରହ" ରେ ଯୋଗଦେଇ ଇଂରେଜ ସରକାରଙ୍କର ଆଦେଶରେ ବନ୍ଦୀ ହୋଇ ବିହାର ପାଟଣା କାରାଗାରରେ କିଛି ମାସ ରହିବାପରେ କାରାମୁକ୍ତ ।

ସ୍ନ ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ତାଙ୍କର ସହକର୍ମୀ ରତ୍ନାକର ନାୟକ (ବଡ଼କେରଜାଙ୍ଗ), ଯୁଧିଷ୍ଠିର ପାଣିଗ୍ରାହୀ (ଶିମିଳିପାଳ), ଚନ୍ଦ୍ରଶେଖର ପ୍ରଧାନ (ବାଗଡ଼ିଆ), ନଟବର ବିଶ୍ୱାଳ (ପାପୋଇନାଳୀ), ବୁଦ୍ଧଦେବ ଦାଶ(ପାଟକୁମୁଣ୍ଡା)ଙ୍କ ସହିତ ସତ୍ୟାଗ୍ରହରେ ଯୋଗଦେଇ ବନ୍ଦୀ ହେବାପରେ, ଅନୁଗୋଳ, କଟକ, ଶେଷରେ ବ୍ରହ୍ମପୁର କାରାଗାରରେ ଅନ୍ୟାନ୍ୟ କର୍ମୀମାନଙ୍କ ସହ ରହି ପ୍ରାୟ ଦୁଇବର୍ଷ ପରେ କାରାମୁକ୍ତ । ସେହି ସମୟରେ ଏ ଅଞ୍ଚଳରେ ଛେଣ୍ଡିପଦାରେ କେବଳ ଗୋଟିଏ ମି.ଇ. ସ୍କୁଲ ଥିଲା । ବାଗଡ଼ିଆ ଗ୍ରାମରେ ଉ.ପ୍ରା. ବିଦ୍ୟାଳୟ ଥିଲା । ଏଣୁ ଏ ଅଞ୍ଚଳରେ ଶିକ୍ଷାର ଉନ୍ନତି ପାଇଁ ତାଙ୍କ ସହକର୍ମୀ ରତ୍ନାକର ନାୟକଙ୍କ ପ୍ରେରଣା ତଥା ଏ ଅଞ୍ଚଳର ଆଗ୍ରହୀ ଜନତାଙ୍କ ସହଯୋଗରେ ବାଗଡ଼ିଆ ଉ.ପ୍ରା. ବିଦ୍ୟାଳୟ ପରିସରରେ ମି.ଇ. ସ୍କୁଲ ପ୍ରତିଷ୍ଠା କରାଗଲା । ଯେଉଁ ବର୍ଷ ସପ୍ତମ ଶ୍ରେଣୀ ପିଲା ପରୀକ୍ଷା ଦେଇ ଉତ୍ତୀର୍ଣ୍ଣ ହେଲେ ତା ପୂର୍ବରୁ ଏହି ସ୍କୁଲ ପରିସର ମଧ୍ୟରେ ହାଇସ୍କୁଲ ପ୍ରତିଷ୍ଠା କରିବା ପାଇଁ ସ୍ଥାନୀୟ ଗ୍ରାମବାସୀ, ଏ ଅଞ୍ଚଳର ଲୋକ ମାନଙ୍କ ସହଯୋଗରେ , ଭାରତ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ସ୍ନ ୧୯୪୭ମସିହା ଜୁଲାଇ ମାସରେ ମହା ସମାରୋହରେ , ଡ଼କ୍ଟର ମାୟାଧର ମାନସିଂହ ଙ୍କ ମୁଖ୍ୟ ଅତିଥିଙ୍କ ଜରିଆରେ ହାଇସ୍କୁଲ ୮ମ ଶ୍ରେଣୀ ଖୋଲାଗଲା , ସେତେବେଳେ ଅନୁଗୋଳ କୋଶଳା ଗ୍ରାମର ଶ୍ରୀ ରାଧାମୋହନ ପ୍ରଧାନଙ୍କୁ ଏ ନୂଆ ସ୍କୁଲ ପ୍ରଥମ ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତି କରାଯାଇଥିଲା । ଏହି ପରି ଭାବେ ଏ ହାଇସ୍କୁଲ ନାନା ଉତ୍ଥାନ ପତନ ଦେଇ ଏ ଅଞ୍ଚଳ ବାସୀଙ୍କ ସହଯୋଗରେ ଆଗେଇ ଚାଲିଲା । ଯାହାକି ଆଜି ଭଗବାନଙ୍କ ଦୟାରୁ ଆମ ଅନୁଗୋଳ ଜିଲ୍ଲା ମଧ୍ୟରେ ପୁରା ସରକାରୀ ସ୍କୁଲ ହିସାବରେ ମାନ୍ୟତା ପାଇ ଆଗେଇ ଚାଲିଛି । ଏହାବ୍ୟତୀତ ଏ ଅଞ୍ଚଳର ଲୋକ ମାନଙ୍କ ସହଯୋଗରେ ବାଗଡ଼ିଆର ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ତିଆରିରେ ତାଙ୍କ ମୁଖ୍ୟ ଭୂମିକା ଥିଲା । ସେ ସମୟରେ ଏ ଅଞ୍ଚଳରେ ଡ଼ାକ୍ତରଖାନା ନଥିଲା , ସେଥିପାଇଁ ସେ ଉଦ୍‌ଯୋଗରେ ଥିଲେ । କିନ୍ତୁ ହଠାତ ତାଙ୍କର ଅସମୟରେ ସ୍ନ୧୯୬୯ମସିହା ଅପ୍ରେଲ , ଦୁଇ ତାରିଖରେ ଜୀବନର ପରିସମାପ୍ତି ଘଟିଲା । ସଂଗ୍ରାମୀ ସାଥି ରତ୍ନାକର ନାୟକ ଆନନ୍ଦ ପ୍ରଧାନଙ୍କ ଘରେ ହୋମିଓପ୍ୟାଥି ଚିକିତ୍ସାଳୟ ଖୋଲିଥିଲେ । ରତ୍ନାକର ନାୟକ ନିଜେ ଚିକିତ୍ସକ ।

***ଲେଖକ : ଶ୍ରୀ ଧନେଶ୍ୱର ପ୍ରଧାନ***
***ସଂଗ୍ରାମୀଙ୍କ ପୁତ୍ର***

# ସାହିତ୍ୟ ବିଭାଗ

## (ଗଦ୍ୟ)



## ପଘା ଛିଡ଼ା କବିତା

ରମେନ୍ଦ୍ର କୁମାର

ବେଶୀ ଦିନର କଥା ନୁହଁ, ଯେତେବେଳେ କବିର ହୃଦୟଟା ଇନ୍ଦ୍ରଧନୁଟିଏ ଦେଖିଲେ ଫୁକୁଙ୍ଗ୍ ଫୁକୁଙ୍ଗ୍ ନାଚୁଥିଲା । ଶେଫାଳୀ ଫୁଲଟିଏର ଦର୍ଶନରେ ତା ଆନନ୍ଦର ଜୁଆର ଶୀର୍ଷରେ ସହସ୍ରାର କମଳ ଫୁଟି ଉଠୁଥିଲା । ହେଲେ ଯୁଗ ଅନୁସାରେ ସ୍ୱର ବଦଳାଇବା ତ କବିଙ୍କ ଧର୍ମ । ହଠାତ୍ ଦେଖାଗଲା, ଆଧୁନିକ କବି ଯେତେବେଳେ ଅସନା ଆବର୍ଜନା ଦର୍ଶନ କରୁଛି, ତା ହୃଦୟର ଅଳିନ୍ଦ ଓ ନୀଳୟ ମିଶି ଆନନ୍ଦରେ ଡୁଏଟ୍ ନାଚୁଛନ୍ତି । ପ୍ରେମ , ସୌନ୍ଦର୍ଯ୍ୟ କିମ୍ବା ପଦ୍ମ, ଗୋଲାପ ଆଦି ଉପରେ ଲେଖିବା ପଳାୟନପନ୍ଥୀ ମାନଙ୍କ କାମ ବୋଲି ଧରାଗଲା । ଆଧୁନିକ କବି ସେଥିରୁ ରସ ପାଇଲା ନାହିଁ । ସେ କାଳର କବିଙ୍କୁ ଶୁଭୁଥିଲା ଶଗଡ଼ିଆର ମନ ଫୁଲାଣିଆ ଗୀତ, ହେଲେ ଏବର କବିଙ୍କ କାନରେ ପଡୁଛି କ୍ଲାନ୍ତ ଅଖର ଆବିର୍ଭାବ । ଏମାନେ କବିତାକକୁ ତାଳ, ଛନ୍ଦର ଶୃଙ୍ଖଳରୁ ମୁକ୍ତ କରି ଦେଇଛନ୍ତି । ଅର୍ଥ, ଭାବର ପଘା ଦଉଡ଼ିରୁ ଆଜାଦ କରି ଦେଇଛନ୍ତି । ଆଉ ଏଇ ସ୍ୱାଧୀନତାର ପରିଣାମ ହେଉଛି କବିତା ନାଁରେ ୨୦-୩୦ଧାଡ଼ିର ଦୁର୍ବଳ ଅର୍ଥହୀନ ସଂଳାପ ସତେ ବା କୀଟନାଶକ ଔଷଧର ବିଜ୍ଞାପନ ।

ଗତକାଲି ଭଲ ବହି ଖଣ୍ଡେ ପଢ଼ିବା ଲୋଭରେ ମୁଁ ବନ୍ଧୁ ଗଣପତି ଘରେ ଯାଇ ପହଞ୍ଚିଲି । ଦେଖିଲି, ସେ ଖଟରେ ଶୋଇ ଶୂନ୍ୟ ଆଖିରେ ଛାତକୁ ଅନେଇ ରହିଛି । ହେଃ, ଇୟେ କ'ଣ?

'ଓଃ ରମେନ୍! ତୁ ପୁଣି ସେଇୟା କଲୁ? ମୋ ଚେତନାର ଉତ୍ତରଣ ହେଇ ଆସିଲା ବେଳକୁ ଚୋରି ପିନ୍‌ରେ ଫକ୍‌ଚର ହେବାର ଥିଲା? ରବର୍ଟ ଫ୍ରଷ୍ଟ କହିଗଲେ "ଏନ୍ ଆଇଡ଼ିଆ ଇଜ୍ ଏ ଫିଆଟ୍ ଅଫ୍

ଆସୋସିଏସନ୍ ।" ଆଉ ତାକୁ ତୁ ଦେଖୁ ଦେଖୁ ନୟାଗଡ଼ର ଅନ୍ଧାର କୂଅରେ ଗଳେଇ ଦେଲୁ? ଏ ଜାତିର ଉତ୍ତର ପୁରୁଷ ତୋତେ କେବେ ବି ମାଫ୍ କରିବେ ନାହିଁ । ସେ ଟିକେ ଅଟକି ଗଲା । ତାପରେ ମୋ ମୁହଁକୁ ନିଘେଇ ଚାହିଁ ଘୋଷଣା କଲା, ତୁ ବୋଧେ ଜାଣିନୁ , ମୁଁ ଏ ଭିତରେ କବି ହେଇଯାଇଛି। ଅବଶ୍ୟ ମୋ କବିତା କଦମ୍ବ ଫୁଲ, ଯମୁନା କୂଳ ମାର୍କା ନୁହଁ। ସେଥିରେ ଥାଏ ଯୁଗ ଯନ୍ତ୍ରଣା।

ମୁଁ ଜାଣେ , ଗଣପତି ଗୋଟିଏ ବିଚିତ୍ର ଜନ୍ତୁ। ସେ ଉଡ୍‌ହାଉସ୍ କୁ ଛାଡ଼ି କାଫ୍‌କାକୁ ପଢ଼େ। ତଥାପି ତାକୁ ଧନ୍ୟବାଦ ଯେ ସେ କେବେ ମର୍ଯ୍ୟାଦାର କୂଳକୁ ଲଂଘନ କରେ ନାହିଁ। ମୁଁ ଆଜି ପିଟିକେଇ ତାକୁ ଅନେଇଥିବା ମଉକାରେ ସେ ହଠାତ୍ କୋଉଠୁ ଡ଼ାଇରିଟିଏ କାଢ଼ି ଆଣିଲା। ଆଉ ମୋର ଗଣେଶ କାନକୁ ଅଳ୍ପ ସମୟ ପାଇଁ ଧାର ସୂତ୍ରରେ ମାଗିଲା । ରମେନ୍! ଏମିତି ମୁଁ କେବେ ମୋ କବିତା କାହାକୁ ଶୁଣାଏନି। କିନ୍ତୁ ମୋର ବିଶ୍ୱାସ ଯେ ତୁ ହିଁ ଯାର ମୂଲ୍ୟ ବୁଝି ପାରିବୁ, ମୋତେ ତୋର ଏକ୍ସପର୍ଟ କମେଣ୍ଟ ଦରକାର। ବାସ୍ ଦୁଇ ତିନିଟା ଶୁଣାଇବି। ସେ ଆରମ୍ଭ କଲା।

ଦୁଇଘଣ୍ଟା ପରେ ଅଧା ଡ଼ାଏରୀ ଶେଷ କରି ଟିକେ ନିଃଶ୍ୱାସ ନେଲା ।ତାପରେ ତୃପ୍ତିର ହସଟିଏ ଛାଟି କହିଲା, ବର୍ତ୍ତମାନ ମୋର ଗନ୍ତାଘରର ସବୁଠାରୁ ଦୁର୍ମୂଲ୍ୟ କବିତାଟି ଶୁଣାଉଛି। ଯାର ଶୀର୍ଷକ ହେଉଛି 'ମୋକ୍ଷ' । ଶୁଣ୍ 'ମୃଷିକ ନଦୀର ଅଶ୍ରୁ ସଜଳ ଆଖିରେ ଆଖିରେ/ ତଣ୍ଡି ମୋଡ଼ିଲା ମାତୃ ହରଣ କାରୀ/ ତାର ମୂର୍ଦ୍ଧାର ବୁହା ବାଲୁକାଶଯ୍ୟା/ ପୂତିଗନ୍ଧର ଆଶା/ ସ୍ୱପ୍ନର ଘୋଡ଼ା ଗନ୍ଧବାହୀ/ମାତାଇ ପବନ ଜଳ/ ଗୋଲାପି ଜହ୍ନ ତଳେ/ ହଳଦୀବର୍ଣ୍ଣ ଅସରପା ଗାତ ଖୋଳେ । ମାପୁଅଛି କି ସେ ନର୍କର ଗଭୀରତା। ଅବା ଆପଣା ଖୋଳପା ଭିତରେ ଆଦିମ କ୍ଷୁଧା'। କବିତା ଆବୃତ୍ତି ଲମ୍ବିଥିଲା ଦୀର୍ଘ ଦଶମିନିଟ।(ନା ଦଶ ଘଣ୍ଟା ?) କାଳ।

ତା ଆବୃତ୍ତି ସଇଲା ବେଳକୁ ମୁଁ ଉଠିବା ପାଇଁ ଗୋଡ଼ ଟେକି ସାରିଥିଲି, ମୋର 'ମୋକ୍ଷ' ପ୍ରାପ୍ତି ହୋଇ ଯାଇଥିଲା । କିନ୍ତୁ ଟୋପାଏ ପ୍ରଶଂସା ପାଇବା ପାଇଁ ସେ ଯେଉଳି ଆଶାୟୀ ଆଖିରେ ମୋ ଆଡ଼କୁ ଅନେଇ ରହିଲା ମୋତେ କୁଣ୍ଠେଇ କୁଣ୍ଠେଇ କହିବାକୁ ପଡ଼ିଲା 'ବହୁତ....ଭଲ ଲା...ଗିଲା...'। ଯଦିଓ ସେ ମୋ ମୁହଁରେ ପାଛିଆଏ ସାଲୁବାଲୁ ଜିଆ ଅଜାଡ଼ି ଦେଲା ଭଳି ଲାଗୁଥାଏ।

'ପରମ୍ପରା ପ୍ରତି ଆଜିର ତରୁଣ ସମାଜର ଅନାସ୍ଥା ଭାବକୁ ଯାଠୁ ଭଲ ଭାବରେ ଆଉ କିଏ ଫୁଟେଉ ପାରିଛି ରମେନ୍ ? ନାଁ, କେହି ନୁହେଁ । 'ମଣିଷ ଅସ୍ତିତ୍ୱର ଅସାରତାକୁ ଯାଠୁ ବଳି ଅଧିକ, ଶକ୍ତିଶାଳୀ ଭାବରେ କଣ ବର୍ଣ୍ଣନା କରାଯାଇପାରେ ?"

'ଅସମ୍ଭବ'। ସେ ପ୍ରଶ୍ନ କରି ଚାଲିଥାଏ ଆଉ ମୁଁ ତାକୁ ତତ୍‌କ୍ଷଣାତ୍ ସମର୍ଥନ ଜଣାଉଥାଏ ଓ ଏଇ ଅତ୍ୟାଚାରୁ ମୁକୁଳିବାର ବାଟ ଅଣ୍ଡାଳୁଥାଏ।

ଶେଷରେ ଗଣପତି ମୋ ଦୁଇ କାନ୍ଧରେ ତା ହାତ ବେଢ଼େଇ ଘୋଷଣା କଲା, ସତରେ ରମେନ୍! ତୁ ଗୋଟେ ଜିନିୟସ୍ । ଆଧୁନିକ କବିତାର ଏତେ ଗଭୀର ଅବବୋଧ ତୋର ଅଛି ବୋଲି ମୁଁ ଆଦୌ ଜାଣି ନଥିଲି। ତୋର ଏଇ ପ୍ରଚଣ୍ଡ ପ୍ରତିଭାକୁ ସମ୍ମାନ ଜଣାଇ ମୁଁ ମୋର ଅବଶିଷ୍ଟ ୪୩ଟି ଯାକ କବିତା ଯାହା ଏଯାଏଁ କାହାକୁ ଶୁଣାଇନି ତୋତେ ହିଁ ଶୁଣାଇବି। ମୁଁ ତା କବଳରୁ ମୁକୁଳିଲା ବେଳକୁ ମୋ ଅବସ୍ଥା ସମୁଦ୍ରର ତରଙ୍ଗରେ ଦୀର୍ଘ ଚାରିଘଣ୍ଟା କାଳ ବୁଡ଼ି ସଦ୍ୟ କୂଳରେ ଲାଗିଥିବା ଅବସନ୍ନ ମୂଷା ଭଳି ହେଇ ସାରିଥିଲା । ମୋର ହୃଦ୍‌ବୋଧ ହେଉଥିଲା , ଆମ ଦେଶର ବଡ଼ ବଡ଼ ଅପରାଧୀ ମାନଙ୍କୁ ଯଦି ମାତ୍ର ଦିନଟିଏ ଏଭଳି କବିଙ୍କ କବିତା ଶୁଣିବାର ଦଣ୍ଡ ଦିଆଯାଆନ୍ତ, ତା ହେଲେ ଦେଶରେ ଅପରାଧର ମାତ୍ରା ଯଥେଷ୍ଟ ଊଣା ହୋଇଯାଆନ୍ତା।

*ସୌଜନ୍ୟ : ସମ୍ବାଦ*

*ତା.୨୬/୦୯/୨୦୦୭*

# ପ୍ରାପ୍ତି

ଇଂ. ପାର୍ଥ ସାରଥି ପାତ୍ର

ବାହାରେ ସାମାନ୍ୟ ବର୍ଷା କିନ୍ତୁ ନିରବଚ୍ଛିନ୍ନ ମୌସୁମୀର ଆତତାୟୀ ଆଗମନ । ବାଳକୃଷ୍ଣ ରେନ୍‌କୋଟ୍ କୁ ସକାଡୁଥିଲା । ପ୍ଲାଣ୍ଟକୁ ଯିବାକୁ ବାହାରୁଥିଲା । ରେନ୍‌କୋଟ୍ ରେ ଅନେକ ଅସଜଡ଼ା ଭାଙ୍ଗ । ଧୀରେ ଧୀରେ ମୁଲାୟମ୍ ହାତରେ ଖୋଲୁଥିଲା । ଆଜି ତାର ସି ସିଫ୍‌ଟ୍ । ରାତି ୧୦.୦୦ରୁ ସକାଳ ୬.୦୦ ଯାଏଁ ଡ୍ୟୁଟି । ଅପରେଟର ଭାବରେ ସେ ପନ୍ଦର ବର୍ଷ ହେଲା କାମ କଲାଣି । କାଷ୍ଟ ହାଉସ୍ ରେ ସ୍ମେଲଟରରେ । ରାତି ସିଫ୍‌ଟଟା ଏବେ ବି ତାକୁ କେମିତି କେମିତି ଲାଗେ । ରାତିରେ କାମ କର । ଦିନରେ ରେଷ୍ଟ ନିଅ, ଘରକାମ କର । ଏଇ ଛଅଦିନ ରାତ୍ରିଚର ବନିଯାଅ । ରାତି ସାରା କାମ ପଡ଼େନି, ପାର୍ଟନର ସାଂଗେ ମିଶି କାମକଲେ କିଛି ସମୟ ରେଷ୍ଟ ବି ମିଳିଯାଏ । ତେବେ ନିଦଟା ଠିକ୍ ହୁଏନି । ଏସିଡ଼ିଟି ପେଟ ଖରାପ କେବେ କେବେ ହୋଇଯାଏ ।

ପାଖ ଘରୁ ଝିଅର ପାଟି ଶୁଭୁଥିଲା । ସେ ମା କୋଳରେ ବସି ଖାଉଥିଲା ଏବଂ ମନକୁ ମନ କଣ ସବୁ କହୁଥିଲା ଟି.ଭି.ଦେଖି ଦେଖି । ଟି.ଭି. ରେ ବି ତାର କାର୍ଟୁନ୍ ଚ୍ୟାନେଲ ଦରକାର । କାର୍ଟୁନ୍ ଚ୍ୟାନେଇ ନହେଲେ ନଚଳେ । କାର୍ଟୁନ୍ ର କଥା ଏବଂ ଝିଅର କଥା ମିଶି ସୃଷ୍ଟି ହେଉଥିଲା ଏକ ମିଶ୍ରିତ କୋଳାହଳ । ସେ ସବୁକୁ ବିଶେଷ ଧ୍ୟାନ ନଦେଇ ବାଳକୃଷ୍ଣ ସେଫ୍‌ଟି ଶୁ ବାହାରକଲା । ଗୋଡ଼ର ଝାଳ ଗନ୍ଧ ଏବଂ ମୋଟା ଚମଡ଼ାର ଗନ୍ଧ ସାମାନ୍ୟ ଭାବରେ ଖେଳେଇ ଗଲା ଘରସାରା । ବର୍ଷାଦିନରେ ଏମିତି ଗନ୍ଧଟା କେମିତି ଆପଣାର ଲାଗେ ନିଜକୁ । ଘଡ଼ିରେ ବାଜୁଥିଲା ରାତ୍ରି ସାଢ଼େନଅର ସଂକେତ । ରାତ୍ରିର ଖାଇବା ସେ ଖାଇ ସାରିଥିଲା । ରାତ୍ରି ଡ୍ୟୁଟିରେ ଗଲେ ସେ ଖୁବ ଅଳ୍ପ ଖାଉଥିଲା । ଆଉ କିଛି ବିସ୍କୁଟ ଏବଂ ଘର ତିଆରି ନିମକି ଜାତୀୟ କିଛି ସାଥିରେ ନେଇଥିଲା, ରାତି ଡ୍ୟୁଟି ସାରିବା ଆଗରୁ ପ୍ଲାଣ୍ଟରେ ଚା ସହିତ ଖାଇବା ପାଇଁ । ପ୍ଲାଣ୍ଟ ଡ୍ରେସ୍ ଦେହରେ ଥିଲା । ବାଁ ପାଖ ପକେଟରେ ହାତମାରି ଦେଖିଲା ପଞ୍ଚକାର୍ଡ ଠିକ୍ ଅଛି କି ନାହିଁ । ପ୍ଲାଣ୍ଟ ଗେଟ୍ ପାଖରେ ପଞ୍ଚ କରି ଯିବାକୁ ହୁଏ ଏବଂ ଫେରିଲା ବେଳକୁ ପୁଣି ପଞ୍ଚକରି ଆସିବାକୁ ହୁଏ ।

ରେନ୍‌କୋଟ୍‌ଟାକୁ ଉପରେ ପିନ୍ଧିଦେଇ ସେ ଘରୁ ବାହାରି ଆସିଲା । ତା ସ୍ତ୍ରୀ ସୁରଭି ଗୋଟିଏ ହାତରେ ଝିଅକୁ ଧରି ତା ଆଡ଼କୁ ଆସିଲା । କିନ୍ତୁ କିଛି କହିଲାନି । ଆଜି ସକାଳୁ ସେମାନେ ପରସ୍ପର ସହ ଅନେକ କଥା ହୋଇଥିଲେ ଦିନସାରା । ଆଉ ଥରେ ସେସବୁ ପୁରୁଣା କଥାର ମାଙ୍କଡ଼ସା ଜାଲ ଭିତରକୁ ଫେରିବାର ଇଚ୍ଛା ନଥିଲା । ବାଳକୃଷ୍ଣ ଘରୁ ବାହାରି ଯାଇ ମଟର ସାଇକେଲରେ ବସୁ ବସୁ ତା ସ୍ତ୍ରୀର ସବୁ ଦିନିଆ କଥା ଠିକ୍ ରେ ଫେରିଆସିବ , ଶୁଣିଲା । ପୁରୁଣା ସ୍କୁଟରଟା ବିକ୍ରିକରି ଅଳ୍ପ କିଛି ଦିନ ହେଲା ସେ ନୂଆ ମଟରସାଇକେଲ୍‌ଟା କିଣିଥିଲା । ପାଖାପାଖି ଷାଠିଏ ହଜାର ଟଙ୍କା ଖର୍ଚ୍ଚ କରି । ମଟର ସାଇକେଲର ନୂତନ ଫିସ୍ ଫିସ୍ ଶବ୍ଦ ତାକୁ ଖୁବ୍ ଆମୋଦଦାୟକ ଲାଗୁଥିଲା ମଟର ସାଇକେଲରେ ବସି ନିଜକୁ ସ୍ମାର୍ଟ ଲାଗିଲା । କେମିତି ଏକ ଅତୀନ୍ଦ୍ରିୟ ଆବେଗରେ ମନ ପୂରିଉଠିଲା । ତେବେ ପରମୁହୂର୍ତ୍ତରେ ତା ସ୍ତ୍ରୀର ଏତେ ଟଙ୍କା ଦେଇ ମଟର

ସାଇକେଲ୍ ନ ଆଣିବା ପାଇଁ କହୁଥିବା କଥା ମନେପଡ଼ିଗଲା । ତା ସ୍ତ୍ରୀର ମନା କରିବାର କାରଣ ଥିଲା ହୁହୁ କରି ଦାମ ବଢ଼ିଯାଇଥିବା ସୁନା ଗହଣା ପାଇଁ ଆଗ୍ରହ।

ମଟର ସାଇକେଲ ଛୋଟ ପିଚୁ ରାସ୍ତାରୁ ବାହାରି, ପାଣି ଟାଙ୍କି ପାଖଦେଇ ବଡ଼ ଓସାରିଆ ରାସ୍ତାକୁ ଆସିଲା । ଏଠୁ ପ୍ଲାଣ୍ଟ ପାଖା ପାଖି ଦଶ ମିନିଟ୍‌ର ବାଟ। ରାସ୍ତାରେ ଭିଡ଼ ନଥିଲା । ନାଲକୋ ନଗର ଟାଉନ୍‌ସିପ୍ ଭିତର ରାସ୍ତା ସବୁ ଓସାରିଆ । ଥାକ ଥାକ ସଜା ହୋଇ ରହିଥିବା ଘର ସବୁ । ମଝିରେ ପାର୍କ । ସବୁଆଡ଼େ ବେଶ ଲୋଭନୀୟ ଲାଇଟ୍ ସବୁର ସ୍ୱର୍ଣ୍ଣାଭ ଦୀପ୍ତି । ରାସ୍ତା ସବୁ ଭିଡ଼ ହୁଏ ସିଫ୍‌ଟ୍ ଶେଷ, ଆରମ୍ଭ ସମୟରେ ଏକ ସମୟରେ ରାସ୍ତାର ଦୁଇପାଖ ପୁରିଉଠେ। ଗାଡ଼ି ସବୁ ପରସ୍ପର ପ୍ରତିଯୋଗିତା କଲାପରି ଜୋର୍‌ରେ ଯାଆନ୍ତି। କେବେ କେମିତି କୁକୁର ନହେଲେ ଗାଈ ରାସ୍ତା ମଝିରେ ଆସିଗଲେ ଏକ୍ସିଡ଼େଣ୍ଟ ହୋଇଯାଏ । ତେବେ ତାର ସଂଖ୍ୟା ଖୁବ୍ କମ୍।

ବାଳକୃଷ୍ଣ ଧିରେ ଧିରେ ପାର୍କ ପାଖ ରାସ୍ତାଦେଇ ଯାଉଥିଲା । କିଛି ସମୟ ପରେ ସେ ଟାଉନ୍‌ସିପ୍ ରାସ୍ତା ଶେଷ କରି ଏନ୍.ଏଚ୍.-୪୨କୁ ଆସିଲା । ସେଠି ରାସ୍ତା ଅଧିକ ଓସାରିଆ । ଟ୍ରାଫିକ୍ ପୋଲିସ୍ ଅଛି । ହାଇଓ୍ୱେରେ ଆସୁଥିବା ଗାଡ଼ିସବୁକୁ ଅଟକାଇ ପ୍ଲାଣ୍ଟ ଆଡ଼କୁ ଯାଇଥିବା ଗାଡ଼ିମାନଙ୍କୁ ଥର ଥର କରି ଛାଡୁଛି। ସ୍ମେଲଟର ଛକରୁ ଏଥର ପ୍ଲାଣ୍ଟ ଗେଟ୍ ଆଡ଼କୁ ଯାଇଥିବା ରାସ୍ତାରେ ସେ ଆଗେଇ ଚାଲିଲା । ଗେଟ୍ ପାଖରେ ଜଗିଛନ୍ତି ସି.ଆଇ.ଏସ୍. ଏଫ୍ ଜଓ୍ୱାନ୍ ସବୁ। ଗେଟ୍ ପାସ୍ ଚେକ୍ କରୁଛନ୍ତି । ସେ ଆଗକୁ ଚାଲିଲା ଗେଟ୍ ମଝିଦେଇ। ପଞ୍ଚ୍ ଷ୍ଟେସନ୍ ରେ ନିଜର କାର୍ଡ ବାହାର କରି ପଞ୍ଚ କଲା ।ସ୍ମେଲଟର ପ୍ଲାଣ୍ଟ ଭିତରେ ତାର ଗନ୍ତବ୍ୟ ସ୍ଥାନ ଥିଲା କାଷ୍ଟ ହାଉସ । ଗେଟ୍ ପାଖରୁ ପ୍ରାୟ ତିନିଶରୁ ଚାଳିଶ ମିଟର ଦୂରତାରେ କାଷ୍ଟ ହାଉସ୍। ତାପରେ ପଟ୍ ଲାଇନ୍ ତାପରେ ଆହୁରି ଆଗକୁ ଏକ କି ଦୁଇ କିଲୋମିଟର ଗଲେ କାର୍ବନ୍ ଏରିଆ । ପ୍ଲାଣ୍ଟର ବିଭିନ୍ନ ବିଭାଗ ସବୁ ବିଛେଇ ରହିଛି ଚାରିଆଡ଼େ। ଅପରେଟର ମାନେ ଯେ ଯାହାର ସ୍ଥାନକୁ ଯାଉଥିଲେ ସମୟ ଅନୁସାରେ। ଧିରେ ଧିରେ ଭିଡ଼ ବି ବଢୁଥିଲା।

ମଟର ସାଇକେଲକୁ ଷ୍ଟାଣ୍ଡରେ ଲକ୍ କରି ଦେଇ ବାଳକୃଷ୍ଣ ସିଫଟି ଅଫିସ୍ କୁ ଆସିଲା । ଅଧା ଅଧା ଓଦା ରେନ୍ କୋଟ୍ ସହ ସେ ଅଫିସ୍ ଭିତରକୁ ପଶିଲା । ମାଗୁଣି, ରମେଶ, ପ୍ରସନ୍ନ , କୈଳାସ, ମହିମା ଅଦି ଆଗରେ ଯାଉଥିଲେ । ସେଠାରେ ସେମାନେ ପ୍ରଥମେ attendance (ହାଜିରା) ଦେଇ ତାପରେ ଯେ ଯାହାର ମେସିନ୍ ପୋଜିସନ୍ କୁ ଚାଲି ଯାଉଥିଲେ। ସେଠାରେ ଠିଆ ହୋଇ ଅପରେଟର ମାନେ ଇଲେକ୍ସନ୍ ନୂଆ ସରକାର ସେଣ୍ଟରରେ ହେବକି ନାହିଁ, ଇତ୍ୟାଦି ବିଷୟରେ କଥା ହେଉଥିଲେ। ସେ (Change) ଚେଞ୍ଜ୍ ରୁମ୍‌କୁ ଗଲା । ରେନ୍‌କୋଟ୍ ବାହାର କରି ପାଣି ସବୁ ଝାଡ଼ିଦେଲା । ହେଲମେଟ୍ ବାହାର କରି ସେଫଟି ହେଲମେଟ ପିନ୍ଧିଲା । ଗ୍ଲୋଭସ୍, ସେଫଟି ଚଷମା ଲଗେଇ ତାରwire rod casting (ଓ୍ୱାୟର ରଡ୍ ମିଲ୍ କାଷ୍ଟି)ପୋଜିସନ୍‌କୁ ଗଲା । B Shift ର ଅପରେଟର ଅସୀମ ସେ ପର୍ଯ୍ୟନ୍ତ ତାକୁ ଅପେକ୍ଷା କରିଥିଲା । ବାଳକୃଷ୍ଣ ତାକୁ ଯାଇ ରିଲିଭ୍ କଲା। ଚାରିଆଡ଼କୁ ଦେଖିଲା । ଫରନେସ୍ ଉଠାହୋଇ ରହିଛି। ପ୍ୟାନେଲରେ ଲାଇଟ୍ ସବୁ ଜଳୁଛି । ଟେମ୍ପରେଚର indicator ଠିକ କାମ କରୁଛି । Casting Speed 2rpm ରେ ଅଛି । ଅସୀମ ତାକୁ ଗଲାବେଳେ କହିଲା କେମିତି ସେମାନେ ବେଲ୍‌ଟ ବଦଳେଇବାବେଳେ ସମସ୍ୟା ହୋଇଥିଲା । ହେଡ଼ର୍

ବାହାରକୁଆସୁନଥିଲା । ମେକାନିକାଲ କାମ କଲେ । ତା ପରେ ଠିକ୍ ହେଲା । ନାଇଟ୍ ସିଫଟର ଅନ୍ୟ ସାଥି ଅପରେଟର ମାନେ ଧୀରେ ଧୀରେ ଅନ୍ୟ ପୋଜିସନ୍ ରେ ରିଲିଭ୍ କଲେ । ସାଥି ପାର୍ଟନର, ମଜଦୁର, କାଜୁଆଲ ମଜଦୁର, ଲାଇନ୍ ଇନ୍‌ଚାର୍ଜ ପାଲ୍ ବାବୁ ସମସ୍ତେ ସେଠାରେ ପହଞ୍ଚିଲେ । ପାଲ୍ ବାବୁ ସେଠାରେ ସମସ୍ତଙ୍କୁ କହିଲେ ଏ ମାସର ଟାରଗେଟ୍ ଛଅହଜାର ପାଞ୍ଚ ଶହ ଟନ୍ ଓୟାର ଇନ୍ କରିବା ପାଇଁ । କିନ୍ତୁ ଏ ପର୍ଯ୍ୟନ୍ତ ଖୁବ୍ କିଛି ଭଲ ଚାଲିନାହିଁ । ଚିଫ୍ ମ୍ୟାନେଜର ପାତ୍ରବାବୁ ଇନ୍‌ଷ୍ଟ୍ରକ୍ସନ୍ ବୁକ୍ ରେ ଲେଖିଛନ୍ତି ଦିନକୁ ଦୁଇଶହ ପଚାଶ ଟନ୍ ଲେଖାଏଁ କଲେ ଯାଇ ଟାରଗେଟ୍ ପହଞ୍ଚିପାରିବ । ସେଥିପାଇଁ ସମସ୍ତେ ସଜାଗ ରହିବାକୁ ହେବ। ବାଳକୃଷ୍ଣ କହିଲା "ସାର୍ ମେକାନିକାଲ , ଇଲେକ୍ଟ୍ରିକାଲ୍ ଇନ୍‌ଷ୍ଟ୍ରୁମେଣ୍ଟେସନ୍ ସମସ୍ତଙ୍କୁ କୁହନ୍ତୁ । ସେମାନେ ସଜାଗ ରହିବେ । କିଛି ପ୍ରୋବ୍ଲେମ୍ ହେଲେ ସମସ୍ତେ ଲାଗି ପଡ଼ିବେ । ପାଲବାବୁ ମୁଣ୍ଡ ହଲାଇ ହଁ କଲେ ଏବଂ ଅଲଗା ଏରିଆକୁ ଚାଲିଗଲେ ।

ଓୟାର୍ ରଡ୍ ମିଲ୍ ସିଫଟ୍ ଆରମ୍ଭରେ ବେଶ୍ ଭଲ ଚାଲିଲା ବାରଟା ପର୍ଯ୍ୟନ୍ତ । ମଝିରେ ମଝିରେ ଡ୍ରସ୍ ବାହାର କରିବାକୁ ହୁଏ ଫ୍ଲୋଟ୍ ର ଚାରିଆଡୁ । ମେଟାଲ ଫ୍ଲୋ ଠିକ୍ ରଖିବାକୁ ପଡ଼େ । ଛୋଟ ଟନ୍‌ଡିସ୍ ଏବଂ ବଡ଼ ଟନ୍‌ଡିସ୍ ଦୁଇଟି ଯାକ ଏକ ସଂଗେ ସମ୍ଭାଳିବାକୁ ପଡ଼େ । କାଷ୍ଟି ହୁଇଲ୍ରେ ମଝିରେ ମଝିରେ ତେଲ ଦେବାକୁ ପଡ଼େ । ୱିପର ଠିକ୍ ରେ କାମ କରୁଛି କି ନାହିଁ ଦେଖିବାକୁ ପଡ଼େ । ବାଳକୃଷ୍ଣର ଓସ୍ତାଦ ହାତ ସବୁ ଜାଗା ଉପରୁ ବୁଲି ବୁଲି କାମ କରିଯାଏ । ଗୋଟିଏ ସେକେଣ୍ଡରେ ସେ ଅସୁବିଧାକୁ ଧରିଦେଇପାରେ । ପ୍ରୋବ୍ଲେମ୍ ଆସିବା ଆଗରୁ ନିଜକୁ ସଜାଡ଼ି ରଖିଥାଏ ।

ବାରଟା ବେଳକୁ କଏଲର coiler ରେ ବାରମ୍ବାର looping ଲୁପିଙ୍ଗ ହେଲା ସବୁ ମେଣ୍ଟେନାନ୍ସ ଲୋକମାନେ ମେସିନ୍ ଚାଲୁ ଚାଲୁ problem slove କରିବାକୁ ଚେଷ୍ଟା କଲେ । କିନ୍ତୁ ହୋଇପାରିଲାନି । ବାର୍ କଟିଂ କରିବାକୁ ପଡ଼ିଲା । ବାଳକୃଷ୍ଣ ପୁଣି ଥରେ ସମ୍ଭାଳି ନେବାପାଇଁ ଚେଷ୍ଟା କଲା । ଥରେ ମେସିନ୍ ବନ୍ଦ ହେଲେ ପୁଣି କାମ ବଢ଼ିଯାଏ । ସମସ୍ତେ ଆସି କାମ କରିବାକୁହୁଏ । ସେପଟେ ଲନ୍‌ଡ଼ର ସଫା lunder , ସେପଟେ Tundish ରୁ ମେଟାଲ ବାହାର କର , small tundish ବାହର କର ଇତ୍ୟାଦି ଇତ୍ୟାଦି । ଏସବୁ କରି ପୁଣି ମେସିନ୍ ଚାଲୁ କଲାବେଳକୁ ଦୁଇଘଣ୍ଟା ଲାଗିଯାଏ ।

ବାଳକୃଷ୍ଣ ଏବଂ ସାଥିମାନେ ଆଜି କିନ୍ତୁ ଜୋର ଲଗାଇ ସବୁକାମ ଜଲଦି ଜଲଦି କଲେ ଏବଂ ମେସିନ୍‌କୁ ପୁଣି ଘଣ୍ଟାଏ ମଧ୍ୟରେ ଆରମ୍ଭ କରିଦେଲେ । ଲାଇନ୍ ଇନ୍‌ଚାର୍ଜ ପାଲ୍ ବାବୁ ସାଥିରେ ହାତ ଲଗେଇଦେଲେ । ଘଣ୍ଟାଏ ସମୟର ପ୍ରଡ଼କ୍ସନ୍ ସେମାନଙ୍କ ପ୍ରଚେଷ୍ଟାରୁ , ଅଧିକ ହୋଇପାରିଲା । ପାଲବାବୁ ଖୁସି ଆଉ ସବୁ ଅପରେଟର ମଜଦୁର ସମସ୍ତେ । ଏକ ତୃପ୍ତିର ହସ ଉକୁଟି ଆସିଲା ବାଳକୃଷ୍ଣର ଝାଳୁଆ ମୁହଁରେ ।

ଆଜି ସିଫଟ୍ ଇନ୍‌ଚାର୍ଜ ଥିଲେ ଭଟ୍ଟାଚାର୍ଯ୍ୟ ବାବୁ । ଭାରି ଅମାୟିକ ଲୋକ । ପାଂଚି ପୁରା ଲାଲ୍ ଏବଂ ଫୁଲ୍ କରି ପାନ ଖାଉଥିବେ । ଧୀରେ ଧୀରେ କଥା କହୁଥିବେ । କାମ ବେଳେ ସବୁଆଡ଼େ ପୁରା ନଜର । କାହାର ସୁବିଧା ଅସୁବିଧା ହେଲା ସବୁବେଳେ ନିହାତି ଖବର ନେବେ । ବାଳକୃଷ୍ଣର ଭାରି ପସନ୍ଦ । ଆଜି କିନ୍ତୁ ଏକ ବିଶେଷ ଦରକାର ଥିଲା ତାଙ୍କ ପାଖରେ । ସିଫ୍‌ଟ୍ ସରିଲା ବେଳକୁ ଭଟ୍ଟାଚାର୍ଯ୍ୟବାବୁ ପଚାରିଲେ

ତାକୁ ପାଖରେ ଦେଖି "କଣ ହେଲା", ସେ କହିଲା , "ସାର୍ ଆଜି ଆପଣଙ୍କ କାର୍‌ଟା ଟିକେ ଦେଖିବି"। ଭଟ୍ଟାଚାର୍ଯ୍ୟବାବୁ କହିଲେ ଆସ, ଦେଖ, କହି ଡ୍ରୋର୍ ଖୋଲିଦେଲେ। ଏକ ମୃଦୁ ସୁଗନ୍ଧ କାର୍ ଭିତରୁ ବାହାରକୁ ଛିଟିକି ଆସିଲା। ନୂଆ କାର୍ ର ଚିକ୍ ଚିକ୍ ରଙ୍ଗ , ସେଥିରେ ଝଲସି ଗଲା ଆଖି। ତାର ତୃଷିତ ଦୃଷ୍ଟି ପହଁରିଗଲା କାର୍ ଭିତରର ପ୍ରତ୍ୟେକଟି ଜିନିଷ ଉପରେ। ନୂଆ ମସୃଣ ଗତି କଭର୍, ଆଗର ଡ଼ାଏଲ୍, ଗିଅର୍ ହ୍ୟାଣ୍ଡେଲ୍ , ସିଟ୍ ବେଲଟ୍, ଉପରର ଲାଇଟ୍ ସବୁକିଛି। ଭଟ୍ଟାଚାର୍ଯ୍ୟ ବାବୁ ପଚାରିଲେ କଣ କିଣିବକି । ନୂଆଟେ ? ତା ପରେ କାର୍ ବ୍ୟାକ୍ ଗିଅର ମାରି ପଛକୁ ଆଣିଲେ। ବୁଲେଇଲେ ଏବଂ ଆଗକୁ ଘୁରାଇ ନେଲେ। ଷ୍ଟିଅରିଂ ଉପରେ ବୁଲିଗଲା ତାଙ୍କ ହାତ। ସେ ଆଗକୁ ବଢ଼ି ଚାଲିଲେ। ବାଳକୃଷ୍ଣ କିଛି ସମୟ ଅଟକି ରହିଗଲା। ପେଟ୍ରୋଲ ର ମୃଦୁଗନ୍ଧ ଚାରିଆଡ଼େ ଖେଳାଇ ଯାଉଥିଲା। ଅନେକଥର ସେ କାର୍ କିଣିବା କଥା ଭାବିଥିଲା ଆଗରୁ । କିନ୍ତୁ ଗୋଟିଏ ନୂଆ କାର ପ୍ରତି ଏମିତି ଆକର୍ଷଣ ଥିଲା ତାପାଇଁ ଏ କ ତଡ଼ିତ୍ ବିସ୍ମୟ। ବର୍ଷାର ଛୋଟ ବିନ୍ଦୁ ସବୁତାକୁ କେତେବେଳୁ ଅଧାଭିଜା କରିଦେଲାଣି ସେକଥା ମନରେ ନଥିଲା।

କାର୍ ଗୋଟିଏ ନେବି ନ ନେବି ଏମିତି ଅନେକ ଦିନ ହେଲା ସେ ଦୋଦୁଲ୍ୟମାନ ଅବସ୍ଥାରେ ଥିଲା। ପୁରୁଣା ସେକେଣ୍ଡ ହେଣ୍ଡ କାର୍ ଦୁଇଟା ବୁଝିଥିଲା ମଧ୍ୟ । ତା ସାଙ୍ଗମାନେ ଅନେକେ ଯ୍ୟ ଭିତରେ କାର୍ କିଣି ଦେଇଥିଲେ। ବର୍ଷେ ତଳେ କିଛି ଏରିଅର ଟଙ୍କା ପାୟ ଦେଢ଼ଲକ୍ଷ ପାଖାପାଖି ମିଳିଥିଲା ସମସ୍ତଙ୍କୁ। କାର୍ କିଣିବାଟା ଗୋଟିଏ ଷ୍ଟାଟସ୍ ର ସିମ୍ବଲ ନଥିଲା ବରଂ ଗୋଟିଏ ଅପରିହାର୍ଯ୍ୟ ଅଭାବ ବୋଧ ତା ମନକୁ ଆନ୍ଦୋଳିତ କରୁଥିଲା । ପନ୍ଦର ବର୍ଷ ତଳେ କାର୍ ଗୋଟିଏ ଷ୍ଟାଟସ୍ ସିମ୍ବଲ ଭଳି ମନେ ହେଉଥିଲା। ନୂଆ ହୋଇ ଜଏନ୍ କରିଥିବା ବେଳ ସେ ଆସୁଥିଲା ସାଇକେଲରେ ଡ୍ୟୁଟି କରିବା ପାଇଁ। ଅଫିସରମାନେ ପ୍ରାୟ ନୂଆ ନୂଆ ଅଫିସର୍ ମାନେ କେହି କେହି ସେକେଣ୍ଡ ହେଣ୍ଡ ଗାଡ଼ି ଚଢୁଥିଲେ। ଜଣେ ଅଧେ ବ୍ରାଣ୍ଡ ନୂଆ କାର୍ ଧରି ଆସୁଥିଲେ। ସେତେବେଳେ କାର୍ ଏକ ଅଲଗା ମଜାଥିଲା। ସେତେବେଳେ ଦୂରରୁ ଥାଇ ବାଳକୃଷ୍ଣ ଦେଖୁଥିଲା। କିନ୍ତୁ ମନରେ କିଣିବାର ଇଚ୍ଛା ହୋଇ ନଥିଲା।

ଏବେ କିନ୍ତୁ କେଉଁଠୁ କେଜାଣି ମନରେ କାର୍ କିଣିବାର କୋହଟା ଆସିଗଲା "ସାଙ୍ଗମାନେ ଥଟ୍ଟାରେ ପରସ୍ପରକୁ କହନ୍ତି ଏମିତି ପାଠ ପଢ଼ିଛି ମେଟ୍ରିକ୍ । ସେଥିରେ ପୁଣି ଚଢ଼ିବ କାର୍। ଏଗୁଡ଼ା ସବୁ ପଛଦିନର କଥା । ଏବେ ପାଠ କଥା କିଏ ପଚାରୁଛି। ପଇସା ଥିଲେ ହେଲା।

ଘରେ ସ୍ତ୍ରୀ କିନ୍ତୁ କାର୍ ପାଇଁ ଏବେ ଏତେ ବ୍ୟସ୍ତ ହୋଇ ନଥିଲା । ଅଳ୍ପ ଦିନ ତଳେ ଏତେ ଗୁଡ଼ାଏ ଟଙ୍କା ଖର୍ଚ୍ଚକରି ମଟର ସାଇକେଲ କିଣିବାର ନିର୍ଦ୍ଧାରଣର ସେ ଖିଲାପ ଥିଲା । ଅଶାନ୍ତି ର ନିଆଁ ତା ମନରେ ପୁରା ନିର୍ବାପିତ ହୋଇନଥିଲା । ସୁନା ଗହଣା ର ଲୋଭ ଏବେବି ଦିକ୍ ଦିକ୍ କରୁଥିଲା।

ଗୋଟିଏ ବର୍ଷ ତଳେ କାର୍ ବିକ୍ରୀ କରିବା ପାଇଁ ଏଜେଣ୍ଟମାନେ ସବୁ ଘର ଘରୁ ବୁଲୁଥିଲେ। ସମସ୍ତଙ୍କ ପାଖରେ ଟଙ୍କା ଥିଲା ।ଟଙ୍କାର ଗନ୍ଧ ଅବା ପାଇ ଯାଇଥିଲେ ସେମାନେ। ସବୁଆଡ଼େ ରାସ୍ତାଘାଟରେ ନୂଆ ଗାଡ଼ି ସବୁ ଠିଆ କରି ଦେଉଥିଲେ ଏବଂ କେତେ କମ୍ ଡ଼ାଉନ୍ ପେମେଣ୍ଟ ରେ ନେଇହେବ ତାର ବିସ୍ତୃତ ହିସାବ ଦେଉଥିଲେ। ସେତେବେଳେ ଅନେକ ଗୁଡ଼ିଏ ନୂଆଗାଡ଼ି ବି ଅପରେଟର ମାନେ କିଣି ଦେଇଥିଲେ।

ଏବେ କିନ୍ତୁ ସେ ସିଜିନ୍ ନାହିଁ । ସେ ଋତୁ ଉଜୁଡ଼ି ଯାଇଛି । ଦିନରାତି ସବୁବେଳେ ବୁଲୁଥିବା ଗାଡ଼ି ଗୁଡ଼ିକ ଏବେ ଆଉ ରାସ୍ତାରେ ନାହିଁ । ଯାଇଛି କାହା ଘରକୁ । ଗ୍ୟାରେଜକୁ ନହେଲେ ବାଡ଼ି ତଳକୁ ।

ବାଳକୃଷ୍ଣ ଭାବିଲା ଏଇକଥା ନେଇ ପୁଣି ସ୍ତ୍ରୀ ସହ ଆଲୋଚନା କରିବ, କିଛି ଗୋଟିଏ ନିର୍ଣ୍ଣୟ କରିବାକୁ ହେବ । ତେବେ ଏବେ ତା ପାଖରେ ଆଦୌ ଟଙ୍କାପଇସା ନଥିଲା । ବ୍ୟାଙ୍କ ମବାଲାନ୍ସ ପ୍ରାୟ ଶୂନ୍ । ତା ନିଜଘର (ଗାଁ) ଏଠୁ ଖୁବ୍ କିଛି ଦୂରରେ ନଥିଲା । ପ୍ରାୟ ତିରିଶ କିଲୋମିଟର ବାଟ । ସେ ଚାହିଁଲେ ଘଣ୍ଟାଏ ମଧ୍ୟରେ ଘରେ ପହଞ୍ଚି ପାରୁଥିଲା । ଘରେ ତାର ସାନ ଭାଇ ସପରିବାର ବାପାମାଙ୍କ ସହ ରହୁଥିଲା । ପ୍ଲାଣ୍ଟରେ ଜାଗା ଯାଇଥିବାରୁ ତାକୁ ନାଲକୋରେ ଚାକିରୀ ମିଳିଥିଲା । ତେବେ ସେ ସାନ ଭାଇ ପାଇଁ ଗାଁରେ ଘରଟିଏ ତୋଳି ଦେଇଥିଲା । ଆପାତତଃ ତାଙ୍କ ଭିତରେ ସେଭଳି ମନୋମାଳିନ୍ୟ ନଥିଲା । ସାନଭାଇ ଚାଷବାଷ କରି ଚଳିଯାଉଥିଲା । ପକ୍କା ଘର ହେବାପରେ ସେମାନେ ଆଗ ଅପେକ୍ଷା ଭଲରେ ଚଳୁଥିଲେ । ତଥାପି ପୂଜାପାର୍ବଣ ସମୟରେ ବାଳକୃଷ୍ଣକୁ ସମସ୍ତଙ୍କ ପାଇଁ ଯାତ୍ରା ଖର୍ଚ୍ଚ ତୁଲେଇବାକୁ ପଡୁଥିଲା । ସ୍ତ୍ରୀ ହିସାବୀ ଥିବାରୁ ଟଙ୍କା ପଇସା ପାଇଁ ବେଶୀ ହଇରାଣ ହେବାକୁ ପଡୁନଥିଲା । ଏଇ ଦଶବର୍ଷ ହେଲା । ଆଗରୁ କିଛି ଆଶା ଭଲ ନଥିଲା । ପ୍ଲାଣ୍ଟରେ ଦରମା କମ୍ ଥିଲା, ସେଥିରେ ପୁଣି ଘରପାଇଁ ଟଙ୍କା ଯୋଗାଡ଼, ଲୋନ୍ ପରିଶୋଧ , ନିଜ ପିଲାଙ୍କ ଆର୍ଥିକ ଜଂଜାଳ ଏଥିରେ ପେଶି ହୋଇ ଯାଉଥିଲା । ସବୁବେଳେ ଅଭାବ ଲାଗି ରହିଥିଲା । ଯାହା କିଣିବାକୁ ତ ଇଚ୍ଛା କରୁଥିଲେ ତା ହୋଇପାରୁନଥିଲା ।

ଦଶବର୍ଷ ତଳେ ସେ ରିଭିଜନ୍ ହେଲାପରେ ଅବସ୍ଥା ଟିକିଏ ସୁଧୁରିଲା ।ଦରମା ଟଙ୍କାରୁ ସବୁ ଘର ଖର୍ଚ୍ଚ ଗଲାପରେ କିଛି କିଛି ବଳାଇ ପାରିଲା । ଆଗକୁ ପାଞ୍ଚ ସାତ ବର୍ଷ ପରେ ଦରକାରରେ ଆସିବ ଭାବି ପୁଅ ଝିଅଙ୍କ ପାଇଁ ପାଠ ପଢ଼ିବା ଖର୍ଚ୍ଚ ପାଇଁ ଟଙ୍କା ରଖିବାକୁ ଆରମ୍ଭ କରିଥିଲା । ସେସବୁ ଆର୍.ଡ଼ି. ଆଉ ଫିକସ୍ଡ଼ ଡ଼ିପୋଜିଟରେ ଟଙ୍କା କିଛି ଜମି ଆସୁଥିଲା । ତେବେ ହାତରେ କିଛି ବଳୁନଥିଲା । ଘରକୁ ଆସିଲା ପରେ ସେ ସ୍ତ୍ରୀ ସହ ଆଲୋଚନା ଆରମ୍ଭ କଲାମାତ୍ରେ ସ୍ତ୍ରୀ କହିଲା, "ଏବେ ତ ସବୁ ମଟର ସାଇକେଲ ପଛେ ଯାଉଛି । ପିଲାମାନଙ୍କ ପାଇଁ ଆର୍ ଡ଼ି ଫିକ୍ସଡ଼ିପୋଜିଟ୍ ଉପରେ ଖବରଦାର ନଜର ନଦିଅ ସେମିତି । ବାକି ଯୋଉଠୁ ଯାହା ଅଣ କର । ମୋତେ ଆଉ ସେ ବିଷୟ ପଚାରନାହିଁ ।"

ବାଳକୃଷ୍ଣ ସାଙ୍ଗ ମାନଙ୍କ ଠାରୁ ଜଣେ ଦଲାଲ ମନୋଜର ଖବର ନେଲା ।ତାକୁ ଫୋନ୍ କରି ସନ୍ଧ୍ୟା ବେଳକୁ ଘରକୁ ଆସିବାକୁ କହିଲା । ମନୋଜ ଲମ୍ବା ହୋଇ ପତଳା ପିଲାଟିଏ । ବୟସ ଖୁବ କମ୍ । କଥା ବି କହେ କମ୍ । ବେଶୀ ସବୁବେଳେ ପଛରେ ଲାଗିଯିବା ଲୋକ ନୁହଁ । ଦଲାଲମାନେ ଦିନରାତି ଫୋନ୍ କରି ବ୍ୟସ୍ତ କରିଦିଅନ୍ତି । ସେଭଳିଆ ଦଲାଲଙ୍କୁ ଦୁରୁ ଜୁହାର । ମନୋଜ ସନ୍ଧ୍ୟାବେଳେ ଆସିଲା । ନମସ୍କାର କରି କହିଲା , କୁହନ୍ତୁ ସାର୍ କେଉଁ ଗାଡ଼ି କଥା ଭାବିଛନ୍ତି । ବାଳକୃଷ୍ଣ ପାଟିରୁ ହଠାତ କଥା ବାହାରିଲାନି । ନୂଆ ଗାଡ଼ି କଥା ପାଟିରେ ଆସି ଅଟକି ଗଲା । ସେ କହିଲା ଗୋଟିଏ ସେକେଣ୍ଡ ହ୍ୟାଣ୍ଡ ମାରୁତି ଗାଡ଼ି ଦେଖ । ମନୋଜ ତାର ଲିଷ୍ଟ ବାହାର କଲା , ସେଥିରେ ଦୁଇଟା ନମ୍ବରଥିଲା ଗାଡ଼ିର ଏବଂ ମାଲିକଙ୍କର ଠିକଣା । ମନୋଜ ବିସ୍ତୃତ ଭାବେ ବର୍ଣ୍ଣନା କରିଚାଲିଲା , ଗାଡ଼ି ଦୁଇଟା ପୁରୁଣାହେଲେ କଣ ହେବ , ପୁରା ଭଲ

କଣ୍ଡିସନ୍ ରେ ଅଛି । ମାତ୍ର ତିରିଶ ହଜାର୍ ଚାଲିଛି । ମାଇଲେଜ୍ ଭଲ । ଇତ୍ୟାଦି ... ଇତ୍ୟାଦି..... । ବାଳକୃଷ୍ଣ ଆଉ ଶୁଣି ପାରୁନଥିଲା ।ହଠାତ୍ ମଝିରୁ କହିଲା, ଚାଳିଶ ପଚାଶ ହଜାର ତ ଲାଗିବ ଆଣିବି କେଉଁଠୁ ?ମନୋଜ କହିଲା, ସେ ବି ଠିକ୍ । ଦୁଇଲକ୍ଷ ଟଙ୍କା ଲୋନ୍ କଲେ ଆପଣ ଅତି ଖୁସିରେ ନୂଆ ମାରୁତି ପାଇଯିବେ, ଏଆର କଣ୍ଡିସନ୍ ସହ , ଗାଡ଼ି ଦାମ୍ ବଢ଼ନାହିଁ । କମୁଛି । ମାସକୁ ଡ଼ାଉନ୍ ପେମେଣ୍ଟ ଆସିବ ପାଖାପାଖି ପାଞ୍ଚହଜାରରୁ ଆଠ ହଜାର ଭିତରେ ।

ବାଳକୃଷ୍ଣ ଭାବିଲା ଆଠହଜାର ଟଙ୍କା କଟିଗଲେ ଦରମାରୁ ପୁଣି କଣ କେମିତି କରିବ । ତା ମୁଣ୍ଡ କାମ କାନାହିଁ । ହିସାବ କିତାବ କଲେ ମେଟ୍ରିକ୍ ମୁଣ୍ଡ ତାର ହଠାତ ଗରମ ହୋଇଯାଏ । ସ୍ତ୍ରୀକୁ ଡ଼ାକି ପୁଣି ପଚାରିଲା, "ଏତିକି ଟଙ୍କା ଗଲାପରେ ଘର ଚଳିପାରିବ ତ ? " ସ୍ତ୍ରୀ କହିଲା ,"ଖାଇବା ପିଇବା ଖର୍ଚ୍ଚରୁ କମେଇବାକୁ ହେବ । ଘରକୁ ଦେଇଥିବା ଟଙ୍କା କିଛି କମ୍ କରିଦିଅ । ଯାତ୍ରା ଖର୍ଚ୍ଚ ବନ୍ଦ କଲେ କିଛିଟା ଚଳି ହୋଇଯିବ ।

ମନୋଜ କହିଲା ସାରା, ଟଙ୍କା ପଇସା ଆସୁଥିବ ଯାଉଥିବି, ଆପଣ ସେସବୁ ବେଶୀ ନଭାବି କୁହନ୍ତୁ କେଉଁକଲର୍ ଆଣିବେ । ସବୁକଲର୍ ର ଗାଡ଼ି ଅଛି, ବାଳକୃଷ୍ଣ କହିଲା, ଏତେସବୁ କଥା ଏଠି ଗୋଟିଏ ଦିନରେ କହିହେବନି । କାଲିକୁ ଆସ , ମନୋଜ କହିଲା, "ଆପଣ ତ ସବୁ କହିସାରିଲେଣି, ଗାଡ଼ି ଆମ କଂପାନୀ ଗ୍ୟାରେଜରେ ଥୁଆ ହୋଇଛି, କାଲି ସକାଳେ ୬.୦୦ଟ. ରେ ଏଠି ପହଞ୍ଚାଇ ଦେବି । ମୁଁ ଆପଣଙ୍କ ପାଇଁ ବେଷ୍ଟ କଲର , ବେଷ୍ଟ ଫାଇନାନ୍ସ୍ ସବୁ କରିଦେଉଛି, ଆପଣ ଚିନ୍ତା କରନ୍ତୁନି , ଭାଉଜଙ୍କୁ କୁହ ମିଠା ଖୁଆଇଦେବେ ।"

କେତେବେଳେ ସଂନ୍ଧ୍ୟା ଯାଇ ରାତ୍ରି ହୋଇଗଲାଣି । ବର୍ଷାଭିଜା ରାତିରେ ପୁଣି ଡ୍ୟୁଟିପାଇଁ ବାହାରିଗଲା ବାଳକୃଷ୍ଣ । ରାତ୍ରିରେ ଜଣେ ଅଧେ ସାଙ୍ଗ ମାନଙ୍କ ସହ ଆଜିଦିନର ଘଟଣା ସବୁ କହୁଥିଲା । ତା ପରେ କାମରେ କେତେବେଳେ ସମୟ ଚାଲିଗଲା , ଜାଣି ହେଲାନି । ଛଅଟା ବାଜି ଦଶ ପନ୍ଦରମିନିଟରେ ସେ ପ୍ଲାଣ୍ଟରୁ ବାହାରିଲା । ଘରେ ପହଞ୍ଚୁ ପହଞ୍ଚୁ ସାଢ଼େ ଛଅ ।

ଘରେ ପହଞ୍ଚି ସେ କାର୍ ଆଗରେ ଥୁଆ ହୋଇଥିବାର ଦେଖିଲା । ତା ଆଖିରେ ବିସ୍ମୟ, ଆନନ୍ଦ (ଟଙ୍କା ଖର୍ଚ୍ଚର )ଦୁଃଖ ସବୁ ମିଶାମିଶି କେମିତି ଏକ ଭାବ ମନରେ ଆସିଯାଇଥିଲା । ସେ କାର୍ ପାଖକୁ ଯାଇ ତାର ଡ଼ୋର୍ ଖୋଲିଲା ନୂଆ କାର୍ ଏକ ସୁଗନ୍ଧ ତାକୁ ଇତସ୍ତତଃ କରିଦେଲା । କାରଟି ପ୍ରାୟ ସେ ଦେଖିଥିବା ଭଟ୍ଟାଚାର୍ଯ୍ୟ ବାବୁଙ୍କ ଗାଡ଼ିଭଳି ଥିଲା । ସେ କାର୍ ଭିତରେ ପଶିଗଲା । ଷ୍ଟିୟରିଂ ଉପରେ ହାତ ବୁଲେଇ ଆଣିଲା । ତାର ଇଚ୍ଛାହେଲା ଏଇ ମୂହୁର୍ତ୍ତରେ ସେ ତା ସ୍ତ୍ରୀ ପୁଅଝିଅ ସମସ୍ତଙ୍କୁ ନେଇ ଆସି ଖୁବ୍ ଜୋରରେ ପାଟି କରି କହିବ, "ଆସ ଆସ ମୋ କାର୍ ପାଖକୁ । ତମ ମାନଙ୍କୁ ବୁଲେଇ ନେଇଯିବି, ଯୁଆଡ଼େ ଚାହିଁବ ସିଆଡ଼େ" । ଡ୍ୟାମ୍ ବୋର୍ଡରେ ଗୋଟିଏ ଛୋଟ ଗଣେଶ ମୁର୍ତ୍ତିଟିଏ ଥିଲା । ସେ ଛୋଟ ମୂର୍ତ୍ତିକୁ ଜୁହାର କଲା ଏବଂ କାର୍ ରୁ ବାହାରି ଆସିଲା , ଏକ ଆନନ୍ଦ ଉତ୍ଫୁଲିତ ମନରେ । ସେ ତା ସ୍ତ୍ରୀକୁ ଦେଖିଲା । ହାତରେ ଫୁଲଡ଼ାଲାରେ ସେ ଫୁଲ ଧରି ଆସୁଥିଲା । ସେ କହିଲା ଆଜି ନୂଆ କାର୍‌ର ପୂଜା କରିବା । ବାଳକୃଷ୍ଣ ର ମନ ର ଆନନ୍ଦ ବହୁଗୁଣିତ ହୋଇଗଲା ।

*ଠିକଣା*

*ପାର୍ଥସାରଥି ପାତ୍ର*

*ସି/ ୨୪୪, ନାଲକୋନଗର, ଅନୁଗୋଳ,*

*ମୋ. ୯୪୩୭୦-୭୬୭୦୧*

# ଦ୍ରୁତ ଶିଳ୍ପାୟନ ବନାମ କଂପାନୀ ରାଜ

**ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ୪୦,୦୦୦ କ୍ଷତିଗ୍ରସ୍ତ ପ୍ରଜା ସ୍ଥାୟୀ ଚାକିରୀ ପାଇଛନ୍ତି ।**
**ମାତ୍ର ଏବେ ଜିନ୍ଦଲ - କ୍ଷତିଗ୍ରସ୍ତ ପରିବାର - ୪୦୦୦ -ସ୍ଥାୟୀ ଚାକିରୀ ପାଇବେ ମାତ୍ର ୨୬୧ଜଣ**
**ଭୂଷଣ କ୍ଷତିଗ୍ରସ୍ତ ପରିବାର ୨୫୦୦-ସ୍ଥାୟୀ ଚାକିରୀ ପାଇବେ ମାତ୍ର ୪୦ଜଣ**

**ପ୍ରଦୀପ ପଣ୍ଡା, ଆଡ଼ଭୋକେଟ**

ଓଡ଼ିଶାର ସାମଗ୍ରିକ ବିକାଶ ପାଇଁ ଦ୍ରୁତ ଶିଳ୍ପାୟନ ପନ୍ଥାକୁ ସରକାର ଜପାମାଳି କରି ଜପୁଛନ୍ତି, ସରକାର ଜପିଲେ ତାଙ୍କ ସ୍ୱପ୍ନକୁ ସାକାର କରିବାପାଇଁ ଜିଲ୍ଲାପାଳ ଓ ଏସ୍ . ପି. ମାନେ ମଧ୍ୟ ଜିଲ୍ଲା ସ୍ତରରେ ତାଙ୍କଠାରୁ ଅଧିକଜୋରରେ ଜପିବା ଆରମ୍ଭ କରିଦେଇଛନ୍ତି । କିନ୍ତୁ କିଛି ଚିନ୍ତାଶୀଳ ବ୍ୟକ୍ତିଙ୍କ ପାଖକୁ ଗଲେ ସେମାନେ ଏହାକୁ ଅନ୍ଧ ଶିଳ୍ପାୟନ ବା ବିକାଶ ନାମରେ ବିନାଶ ବୋଲି ଯୁକ୍ତି ବାଢୁଛନ୍ତି । ସରକାର ଯେଉଁ ମାନଙ୍କ ସାମଗ୍ରିକ ବିକାଶ ପାଇଁ ଶିଳ୍ପ କରୁଛନ୍ତି, ସେମାନେ ଏହାକୁ ଘୋର ବିରୋଧ କରିବା ସହିତ ଜୀବନ, ଜୀବିକା ଛଡ଼ାଇ ନେବାର ମାର୍ଗ ବୋଲି ବର୍ଣ୍ଣନା କରୁଛନ୍ତି । ଏସବୁ ପରସ୍ପର ବିରୋଧି ଚିନ୍ତାଧାରା ମଧ୍ୟରେ ଗାଁର କୃଷକ, ଶିକ୍ଷିତ ବେକାର ଏବଂ କ୍ଷୁଦ୍ର ଉଦ୍ୟୋଗପତି ମାନେ ଘୋର ଚିନ୍ତାରେ ପଡ଼ିଗଲେଣି । ସମସ୍ୟା ସମାଧାନ ହେବା ପୂର୍ବରୁ ବିରାଟ ପ୍ରଶ୍ନବାଚୀ ଠିଆ ହୋଇଗଲାଣି ।

ଏ ସବୁ ସମସ୍ୟାର ସମାଧାନ ଚିନ୍ତା କରିବାକୁ ଗଲେ, ପ୍ରଥମେ ଆମ୍ଭ ମାନଙ୍କ ନଜର ପଡ଼େ ଶିଳ୍ପ ପାଇଁ ସର୍ବସ୍ୱ ହରାଇଥିବା କ୍ଷତିଗ୍ରସ୍ତ ପ୍ରଜାମାନଙ୍କ ସମସ୍ୟା ଉପରେ । ତାଙ୍କର ଥଇଥାନ ଓ ପୁନର୍ବାସ ପାଇଁ ସରକାର ଭାରତ ବର୍ଷର ସବୁଠାରୁ ଶ୍ରେଷ୍ଠ ପୁନର୍ବାସ ଓ ଥଇଥାନ ନୀତି -୨୦୦୬ କରିଛନ୍ତି ବୋଲି ଡ଼ିଣ୍ଡିମ ବାଡ଼ାଉଛନ୍ତି । କିନ୍ତୁ ଅତି ନିକଟରୁ ଦେଖିଲେ ଶିଳ୍ପପତିଙ୍କ ସ୍ୱାର୍ଥ ହାସଲ ଛଡ଼ା, ଜମି ଦେଇଥିବା କ୍ଷତିଗ୍ରସ୍ତ ପ୍ରଜାଙ୍କ ସାମାନ୍ୟ ସ୍ୱାର୍ଥ ରକ୍ଷା କରାଯାଇ ନାହିଁ । ଏହା ପୂର୍ବରୁ ଶିଳ୍ପ ପାଇଁ ଜମି ଦେଇଥିବା କ୍ଷତିଗ୍ରସ୍ତ ପ୍ରଜାଙ୍କର ଶିଳ୍ପରେ ନିଯୁକ୍ତି ପାଇବାରେ ଅଧିକାର ରହୁଥିଲା । ଯାହାଦ୍ୱାରା ବହୁପରିମାଣର କ୍ଷତିଗ୍ରସ୍ତ ପ୍ରଜା ନାଲକୋ, ମହାନଦୀ କୋଲଡ଼ଫିଲଡ଼, ଏନ୍.ଟି.ପି.ସି. ଭଳି ରାଷ୍ଟ୍ରୀୟ ଉଦ୍ୟୋଗରେ ସ୍ଥାୟୀ ଚାକିରୀ କରିପାରିଛନ୍ତି । କିନ୍ତୁ ଓଡ଼ିଶା ସରକାରଙ୍କ ଥଇଥାନ ଓ ପୁନର୍ବାସ - ୨୦୦୬ ନୀତି ଅନୁଯାୟୀ ସମସ୍ତ ଜମି ଓ ଘରଡ଼ିହ ହରାଇ, କେବଳ ଘରଡ଼ିହଖଣ୍ଡେ ରହୁଥିବା ପ୍ରଜା ଶିଳ୍ପରେ ସ୍ଥାୟୀ ନିଯୁକ୍ତି ପାଇଁ ପାଇବା ହକଦାର ନୁହେଁ । ଏହି ନୀତି ଅନୁଯାୟୀ ଓ ଆମ୍ଭ ଅନୁଗୋଳ ଜିଲ୍ଲା ପ୍ରଶାସନର ଆକଳନ ଅନୁଯାୟୀ ଜିନ୍ଦଲ ଭଳି ଭାରତର ସର୍ବ ବୃହତ ଇସ୍ପାତ କାରଖାନାରେ ନିଯୁକ୍ତ ପାଇବେ ମାତ୍ର ୨୬୧ଜଣ ବିସ୍ଥାପିତ ପ୍ରଜା ଓ ଭୂଷଣ କଂପାନୀରେ ନିଯୁକ୍ତି ପାଇବେ ମାତ୍ର ୪୦ଜଣ । ଜିନ୍ଦଲ କଂପାନୀ ଜମି ଅଧିଗ୍ରହଣ ଦ୍ୱାରା ୪୦୦୦ ପରିବାର ନିଜର ଭିଟାମାଟି ହରାଇବେ ଓ ଭୂଷଣ କଂପାନୀ ଦ୍ୱାରା ୨୫୦୦ ପରିବାର ଭିଟାମାଟି ହରାଇ ସଡୁଛନ୍ତି । ଏମାନଙ୍କ ଜୀବନ ଜୀବିକାର ଦାୟିତ୍ୱ ଓଡ଼ିଶାର ନିର୍ବାଚିତ ସରକାର ନେବା ପାଇଁ ଉଚିତ୍ ମଣୁନାହାନ୍ତି । ଏଠାରେ ଆପଣଙ୍କୁ ମୁଁ ସୂଚିତ କରାଇ ଦେବାପାଇଁ

ଚାହେଁ ଓଡ଼ିଶାର ଲୋକ ପ୍ରିୟ ଜନ ନାୟକ ସ୍ୱର୍ଗତ ବିଜୁବାବୁଙ୍କ ରାଉରକେଲା ଷ୍ଟିଲ୍ ପ୍ଲାଣ୍ଟ ଭଳି ୨.୫ ଏମ୍.ଟି. କାରଖାନା ଦ୍ୱାରା କ୍ଷତିଗ୍ରସ୍ତ ହେଉଥିବା ୪୦,୦୦୦ ବ୍ୟକ୍ତିଙ୍କୁ ସ୍ଥାୟୀ ନିଯୁକ୍ତି ଦେଇଥିଲେ। ଯାହା ଫଳରେ ଏହି କାରଖାନା ଜନ ସମର୍ଥନ ପାଇ ସଫଳତା ପଥରେ ଆଗେଇ ଗଲା। କିନ୍ତୁ ଓଡ଼ିଶା ସରକାରଙ୍କର ସ୍ୱାକ୍ଷରିତ ସମସ୍ତ ଶିଳ୍ପରେ ଏଭଳି ନିଯୁକ୍ତି ମିଳିବ ନାହିଁ।

ରାଜ୍ୟର ବିକାଶ ପାଇଁ ଚିନ୍ତା କରି ସରକାର ସାଧାରଣ କୃଷକର ଜମିକୁ ଶିଳ୍ପପତି ମାନଙ୍କ ହାତକୁ ଟେକି ଦେଇ "ଥଇଥାନ ଓ ପୁନର୍ବାସ ନୀତି ୨୦୦୬" ଅନୁଯାୟୀ କ୍ଷତିଗ୍ରସ୍ତଙ୍କୁ ଶୋଷଣ କରୁଛନ୍ତି। ଏହାଦ୍ୱାରା ଶିଳ୍ପ ସଫଳତା ପାଇବା ପୂର୍ବରୁ ଘୋର ବିରୋଧର ସମ୍ମୁଖୀନ ହେଉଛି। ତେଣୁ ଏ ନୀତିର ତୁରନ୍ତ ସଂଶୋଧନ ଆବଶ୍ୟକ। ଶିଳ୍ପ ପାଇଁ ଜମି ହରାଇଥିବା ପ୍ରତ୍ୟେକ କ୍ଷତିଗ୍ରସ୍ତଙ୍କୁ ଶିଳ୍ପରେ ସ୍ଥାୟୀ ଚାକିରୀର ବ୍ୟବସ୍ଥା ସହିତ ଜମି ଅନୁପାତରେ ଶିଳ୍ପରେ ଅଂଶୀଦାର ହେବା ନିତ୍ୟାନ୍ତ ଜରୁରୀ ଅଟେ। ନଚେତ୍ ସରକାରଙ୍କ ଶିଳ୍ପନୀତି ନାଲି ଫିତା ତଳେ ରହିଯିବ।

ମୁକ୍ତ ବାଣିଜ୍ୟନୀତି ଦ୍ୱାରା ଶିଳ୍ପପ୍ରତିଷ୍ଠା ପୂର୍ବପେକ୍ଷା ସହଜ ହୋଇଗଲାଣି। ସ୍ୱାସ୍ଥ୍ୟକେନ୍ଦ୍ର, ବିଦ୍ୟାଳୟ, ମହାବିଦ୍ୟାଳୟ ଓ ଗୋଷ୍ଠୀ ଉନ୍ନୟନ କେନ୍ଦ୍ରଭଳି ସାମାଜିକ ଅନୁଷ୍ଠାନକୁ ସରକାର ଅଳ୍ପଜମିଦେବା ପାଇଁ ଅନେକ କଟକଣା ରହିଛି। ଏମାନଙ୍କ ସ୍ଥିତିବିନା ସାମାଜିକ ଉନ୍ନତି ଅସମ୍ଭବ, କିନ୍ତୁ ସମାଜର ଅବହେଳିତ ଶ୍ରେଣୀର ଉନ୍ନତି ପାଇଁ ଗଢ଼ିଉଠୁଥିବା ଏସବୁ ସାମାଜିକ ଅନୁଷ୍ଠାନ ପ୍ରଶାସନିକ ଅବହେଳା ଯୋଗୁଁ ସ୍ଥାଣୁ ହୋଇ ଗଲାଣି। କିନ୍ତୁ ଶିଳ୍ପ ପାଇଁ ସରକାର ହଜାର, ହଜାର ଏକର ସରକାରୀ ଜମି, ଜଙ୍ଗଲ ଜମି, ଶ୍ମଶାନ ଓ ଗୋଚର ତତ୍କ୍ଷଣାତ୍ ଦେବାରେ ପଛାଉନାହାନ୍ତି। ସମସ୍ତ ନିୟମ କାନୁନର ଊର୍ଦ୍ଧ୍ୱରେ ଶିଳ୍ପପତି ଜମି ହାସଲ କରୁଥିବା ବେଳେ ଭୂମିହୀନ ବା ଦାରିଦ୍ର୍ୟ ସୀମାରେଖା ତଳେ ଥିବା ସାଧାରଣ ନାଗରିକ ଭୂମିହୀନ ହୋଇ ରାସ୍ତାର ଭିକାରୀ ସାଜିଛି। ଏକ୍ଷେତ୍ରରେ ସରକାରଙ୍କର ବିଜ୍ଞାପନ ଛଡ଼ା ବାସ୍ତବତା ନାହିଁ। ସମାଜରେ ସମାନତାର ଅଭାବ ଥାଇ ଗଢ଼ିଉଠୁଥିବା ଶିଳ୍ପନୀତି କାହା ସ୍ୱାର୍ଥପାଇଁ ?

ଆମ ରାଜ୍ୟର ବିକାଶ ପାଇଁ ଶିଳ୍ପପତି ମାନେ ହଜାର, ହଜାର କୋଟି ଟଙ୍କାର ପୁଞ୍ଜି ନିବେଶ କରୁଛନ୍ତି, ବୋଲି ସବୁବେଳେ ଗଣମାଧ୍ୟମରେ ପ୍ରକାଶ ପାଉଛି। ସାଧାରଣ ବର୍ଗର ସାମାଜିକ ଓ ଆର୍ଥିକ ଉନ୍ନତି ପାଇଁ ଏ ଅର୍ଥ ବିନିଯୋଗ ହେଉଛି ଓ ଶିଳ୍ପ ମାଧ୍ୟମରେ ଲୋକଙ୍କ ସମସ୍ୟା ସମାଧାନ ହେଉଛି ବୋଲି ଶିଳ୍ପପତି ଓ ସରକାର ଡ଼ିଣ୍ଡିମ ପିଟୁଛନ୍ତି, କିନ୍ତୁ ଭାରତ ବର୍ଷରେ ଓଡ଼ିଶାର ଦାରିଦ୍ର୍ୟତା ବଢ଼ିଚାଲିଛି। ବି.ପି.ଏଲ୍ ତାଲିକା ମଧ୍ୟ ବୃଦ୍ଧିପାଇଛି। ଭାରତର ୧୪୦ଟି ଦାରିଦ୍ର୍ୟତମ ଜିଲ୍ଲାମଧ୍ୟରେ ଅନୁଗୋଳ ଓ କେନ୍ଦୁଝର ସ୍ଥାନ ପାଇଛି। ତେଣୁ ବିଗତ ୫୦ବର୍ଷର ଶିଳ୍ପାୟନ ଲୋକଙ୍କ ସ୍ୱାର୍ଥପାଇଁ ନୁହେଁ, ଏହା ସ୍ପଷ୍ଟ। ଶିଳ୍ପପତି ମାନେ ନେଇ ଆସୁଥିବା ହଜାର, ହଜାର କୋଟି ଟଙ୍କା ରାଜନେତା (ଯେ କୌଣସି ଦଳର ହୁଅନ୍ତୁନା କାହିଁକି) ଓ ପ୍ରଶାସନିକ ଅଧିକାରୀଙ୍କ ପାଇଁ, ତାଙ୍କ ସ୍ୱାର୍ଥ, ତାଙ୍କ ପରିବାରର ବିକାଶ ଓ ବ୍ୟଭିଚାର ପାଇଁ ଉଦ୍ଦିଷ୍ଟ କ୍ଷତିଗ୍ରସ୍ତ ପ୍ରଜାଙ୍କୁ ମିଳିବ ପୋଲିସ ଲାଠି ଓ ପ୍ରଦୂଷଣ।

ଆମର ବିକାଶ କଥା ଚିନ୍ତା କଲାବେଳେ

ଦାରିଦ୍ର୍ୟତା ସ୍ୱର ସ୍ପଷ୍ଟ ହୋଇଯାଏ । ୧୯୪୬ ମସିହାରେ ଜାପାନର ନାଗାସାକି ଓ ହିରୋସୀମା ଉପରେ ଆମେରିକାର ପରମାଣୁ ବିସ୍ଫୋରଣ ପରେ ଦେଶ ଛାରଖାର ହୋଇଗଲା । ଅର୍ଥନୀତି ଉଜୁଡ଼ି ପଡ଼ିଲା । ତାର ଠିକ୍ ଏକ ବର୍ଷ ପରେ ୧୯୪୭ମସିହାରେ ଆମେ ସ୍ୱାଧୀନତା ପାଇଲୁ । କିନ୍ତୁ ଆଜି ଜାପାନ ଓ ଭାରତ ମଧ୍ୟରେ ବିକାଶର ପ୍ରଭେଦ ଚିନ୍ତା କରାଯାଇ ନପରେ । ଏହାକୁ ପର୍ଯ୍ୟାଲୋଚନା କଲେ ଗୋଟିଏ କଥା ସ୍ପଷ୍ଟ ହୋଇଯାଏ । ଜାପାନ ବାସୀ ଭରଷା କରନ୍ତି - ଦେଶ ପ୍ରେମ ଜାତୀୟତା ଓ ପରସ୍ପର ବିଶ୍ୱାସ ଉପରେ । ଏହାକୁ ମୂଳପୁଞ୍ଜି କରି ଜାପାନ ବିଶ୍ୱଦରବାରରେ ମୁଣ୍ଡଟେକି ଠିଆ ହୋଇଛି । କିନ୍ତୁ ଖଣିଜ ଦ୍ରବ୍ୟ, ଜଳ ସଂପଦ ଓ ଲୋକ ଶକ୍ତିରେ ଭରପୁର ଥିବା ଭାରତୀୟଙ୍କ ପ୍ରତିନିଧିତ୍ୱ କରୁଥିବା ରାଜନେତା ଓ ପ୍ରଶାସକ ମଧ୍ୟରେ ଜାତୀୟତାର ଘୋର ଅଭାବ । ଦେଶ ଓ ନିଜ ସଂଗଠନକୁ ନିନ୍ଦିତ କରି ବ୍ୟକ୍ତିଗତ ସ୍ୱାର୍ଥ ହାସଲ ଏହାଙ୍କ ମୂଳଲକ୍ଷ୍ୟ । ବିଶ୍ୱାସର କଥା ନକହିବା ଭଲ । ସରକାରଙ୍କ ପ୍ରତିଶ୍ରୁତି ସବୁବେଳେ ପାଣିର ଗାର । ତେଣୁ ସରକାରଙ୍କ ପ୍ରତିଶ୍ରୁତିକୁ ସାଧାରଣ ଜନତା ବିଶ୍ୱାସ କରନ୍ତି ନାହିଁ । ତେଣୁ ଏ କ୍ଷେତ୍ରରେ ସାଧାରଣ ବର୍ଗର ବିଶ୍ୱାସ ଭାଜନ ନହୋଇ, ପ୍ରଶାସନ ଓ ପୋଲିସ୍ ମାଧ୍ୟମରେ ଦମନ ଲୀଳା ଚଳାଇ ଶିଳ୍ପ ପ୍ରତିଷ୍ଠା ସଂପୂର୍ଣ୍ଣ ଅଗଣତାନ୍ତ୍ରିକ ଏବଂ ଭବିଷ୍ୟତରେ ଏହା ଏକ ବିରାଟ ବିପ୍ଲବ ପାଇଁ ଖୋରାକ ଯୋଗାଇବ । **ସରକାର ଯଦି ଶିଳ୍ପାୟନ ଚାହୁଁଛନ୍ତି, ପ୍ରଥମେ ଜନ ସମାଜର ବିଶ୍ୱାସ ଭାଜନ ହୁଅନ୍ତୁ । ଭୌଗଳିକ ସ୍ଥିତି, ଲୋକଙ୍କ ଚାହିଦା ଓ ମତକୁ ସମ୍ମାନ ଦେଇ ଶିଳ୍ପ ଓ ଶିଳ୍ପନୀତି ପ୍ରଚଳନ କରାଯାଉ । ଜାପାନର ଔଦ୍ୟୋଗିକ ବିକାଶ ନୀତିକୁ ପରୀକ୍ଷାମୂଳକ ଭାବେ ପ୍ରଚଳନ କରାଯାଇ ଶିଳ୍ପର ବିକାଶ ସହିତ ଜନସମାଜର ସାମୁହିକ ବିକାଶ କରି ଶାନ୍ତିର ମାର୍ଗରେ ଶିଳ୍ପ ପ୍ରତିଷ୍ଠା ହେଲେ ସମାଜର ବିକାଶ ହୋଇପାରିବ ।** (କ୍ରମଶଃ..........)

ପ୍ରଦୀପ ପଣ୍ଡା , ଆଡ଼ଭୋକେଟ୍
ମୁଖପାତ୍ର -
ଜିନ୍ଦଲ କ୍ଷତିଗ୍ରସ୍ତ ପ୍ରଜା ସଂଗ୍ରାମ ସମିତି , ଅନୁଗୋଳ
ଆପଣଙ୍କ ସୁଚିନ୍ତିତ ମତାମତ ଅପେକ୍ଷାରେ :
୯୮୬୧୦୯୪୫୯ (ବୁଲା ଫୋନ୍)



# ସ୍ୱାଭିମାନୀ ଓଡ଼ିଆ

ଡ଼ଃ. କୁଞ୍ଜବିହାରୀ ପ୍ରଧାନ

ଓଡ଼ିଶାର ସ୍ୱାଭିମାନ କହିଲେ ମଧୁବାବୁଙ୍କ ଚିତ୍ରପଟ୍ଟ ଆଖିଆଗରେ ନାଚିଯାଏ । ଗଙ୍ଗାରୁ କର୍ଣ୍ଣାଟ ପର୍ଯ୍ୟନ୍ତ ବିସ୍ତୃତ ଉତ୍କଳ ସାମ୍ରାଜଙ୍କ ଆଧିପତ୍ୟ, ଓଡ଼ିଆ ମାନଙ୍କ ପ୍ରତି ତାଚ୍ଛଲ୍ୟରେ ତାଙ୍କ ସ୍ୱାଭିମାନ ଚିତ୍କାର କରି ଉଠିଲା । କଲିକତାରେ ଏମ୍.ଏ. ବି.ଏଲ ପାସ କରି ଅଲୀପୁର କୋର୍ଟରେ ଓକିଲାତି କଲେ । ବେଶ ସୁନାମ ବେଶ ଅର୍ଥ ଉପାର୍ଜନ କଲେ ମଧ୍ୟ ଛିନ୍ନ ଅବୟବ ଉତ୍କଳ ଜନନୀର ଅଶ୍ରୁଳ ବଦନ ତାଙ୍କ ପ୍ରାଣକୁ ଅସ୍ଥିର କଲା । ଉତ୍କଳ ଏବଂ ଉତ୍କଳୀୟ ମାନଙ୍କର ସେବାପାଇଁ ୧୮୮୧ରେ ସେ କଟକ ଆସିଲେ । କଟକ ବାର୍ ରେ ବଙ୍ଗାଳୀ ମାନଙ୍କର ପ୍ରଭାବ ତାଙ୍କୁ ବସିବା ପାଇଁ ଆଣ୍ଠୁଖଣ୍ଡେ ମଧ୍ୟ ମିଳିଲା ନାହିଁ । ତେଣୁ ସେ ଜଜ୍ କୋଟ ବାରନ୍ଦାରେ ନିଜର ସିରସ୍ତା ଖୋଲିଲେ । ଜଜ୍ ତାଙ୍କୁ ଭିତରକୁ ଡ଼ାକି ଆସନ ଦେଇ ପଚାରନ୍ତେ :

ମଧୁବାବୁ କହିଲେ ବାର୍ ରେ ମୋ ପାଇଁ ଆସନ ନାହିଁ, ମାତ୍ର ମୋର ବିଶ୍ୱାସ ଆପଣଙ୍କ ହୃଦୟରେ ନିଶ୍ଚୟ ସ୍ଥାନ ଅଛି, ମଧୁବାବୁଙ୍କ ମୁଖର ଜ୍ୟୋତି ରେ ପ୍ରଭାବିତ ହୋଇ ଇଂରେଜ ଜଜ୍ ତାଙ୍କୁ କୋର୍ଟର ଗୋଟିଏ କୋଠରୀ ଛାଡ଼ି ଦେଲେ । ବଙ୍ଗାଳୀ ଓକିଲ ମାନଙ୍କ ଛାତିରେ ଚମକ ପଶିଲା ।

ମଧୁବାବୁଙ୍କ ଓକିଲାତି ସୁନାମ ଅର୍ଜନ କଲା । ଅର୍ଜିତ ଅର୍ଥ ଓଡ଼ିଶା ଓ ଓଡ଼ିଆର ସାମୁହିକ ବିକାଶରେ ନିୟୋଜିତ କଲେ । ସେ ଅନୁଭବ କଲେ ପ୍ରତି ବ୍ୟକ୍ତି ପ୍ରତି ଜାତିର ସ୍ୱାଭିମାନ ହିଁ ମୂଳ ଭିତ୍ତି । ତେଣୁ ସେ କହିଲେ - ଆଳେ ସଖି ଆପଣା ମହତ ଆପେ ରଖି । ଖୋଜିଲେ ଓଡ଼ିଆ ସ୍ୱାଭିମାନର ଭିତ୍ତିଭୂମି । ଦେଖିଲେ ଯେଉଁ ହାତ କୋଣାର୍କ ରାଜରାଣୀ ଆଦି ମନ୍ଦିର ଗାତ୍ରରେ ନିର୍ଜୀବ ପଥରକୁ ସଜୀବ କରିପାରିଛି ସେଇ ହାତ ଆଜି ମୁଠାଏ ଅନ୍ନ ପାଇଁ ଦିନସାରା ମାଟି ହାଣୁଛି, ପଥର ଚକି ଶିଳ ଶିଳପୁଆ ଗଢୁଛି । ଓଡ଼ିଶାର କୁଟୀର ଶିଳ୍ପର ପୁନରୁଦ୍ଧାର ପାଇଁ ମନ ବଳେଇଲେ । ଆର୍ଥିକ ବିକାଶ ପ୍ରଥମ ଚିନ୍ତା । ଅନ୍ନ ଚିନ୍ତା ଚମତ୍କାର । ସୁନାରୂପା , ତାରକସି କାମ , ପିପିଲିର ଚାନ୍ଦୁଆ, ଶିଙ୍ଘ କାମର ବିକାଶ ପ୍ରତି ଦୃଷ୍ଟି ଦେଲେ । ୧୮୦୯ରେ ସ୍ଥାପନ କଲେ (ଉତ୍କଳ ଟାନେରୀ), ଏଇ ଜୋତାର ଖ୍ୟାତିରେ ଆକର୍ଷିତ ହୋଇ କ୍ୟାପ୍ଟେନ୍ ଆଲିଂଟନ୍ ସୈନ୍ୟ ମାନଙ୍କ ପାଇଁ ଏହି ସ୍ୱଦେଶୀ କାରଖାନାରୁ ଜୋତା ନେଇ ବଡ଼ ସନ୍ତୋଷ ପ୍ରକାଶ କରିବା ସହ ପ୍ରଶଂସା ପତ୍ର ଦେଇଥିଲେ । ଗୋଟିଏ ଖରାପ ଜୋତା ପାଇଁ ଶହଶହ ଜୋତା ପୋଡ଼ି ଦେବା ଦ୍ୱାରା ପ୍ରଭୂତ କ୍ଷତି ହେଲା । ମାତ୍ର ସ୍ୱାଭିମାନ ଥିଲା ତାଙ୍କ ପାଇଁ ପ୍ରାଣ । ମହାତ୍ମାଗାନ୍ଧୀ ଉତ୍କଳ ଟାନେରୀ ଦେଖି ବିମୁଗ୍ଧ । ଗାନ୍ଧୀ କହିଲେ, ଏ ଟନେରୀ ଫଳରେ ମଧୁବାବୁ ଅସ୍ପୃଶ୍ୟ ଭେଦଭାବ ଉଠେଇ ଦେଇଛନ୍ତି । ଖଣ୍ଡ ବିଖଣ୍ଡିତ ଉତ୍କଳ ମାତାକୁ ଏକତ୍ର କରିବା ପାଇଁ ଧ୍ୟାନ ଦେଲେ । ୧୮୮୨ରେ ଖଲିକୋଟରେ ଉତ୍କଳ ସଭା ସ୍ୱତନ୍ତ୍ର ଉତ୍କଳ ପାଇଁ ଆଲୋଚନା କରୁଥାଏ । ସମ୍ବଲପୁରରେ ଭାଜ୍ୟ ଆନ୍ଦୋଳନ । ଏ ସମସ୍ତଙ୍କୁ ଏକତ୍ର କରି ମଧୁବାବୁ ଗଢ଼ିଲେ ଉତ୍କଳ ସମ୍ମିଳନୀ । ୧୯୦୩ ସମ୍ମିଳନୀକୁ ଉଦ୍‌ବୋଧନ ଦେଇ ଗାଇଲେ :

ଏହି ସମ୍ମିଳନୀ    ଜାତି ପ୍ରାଣ ସିନ୍ଧୁ<br>
    କୋଟି ପ୍ରାଣ ବିନ୍ଦୁ ଧରେ<br>
ତୋର ପ୍ରାଣବିନ୍ଦୁ    ମିଶାଇ ଦେ ଭାଇ

ଢ଼େଇଁ ପଡ଼ି ସିନ୍ଧୁ ନୀରେ

୧୮୮୫ରେ ଭାରତୀୟ ଜାତୀୟ କଂଗ୍ରେସ ଜଣେ ସାଇବ ଦ୍ୱାରା ଗଠିତ ହେଲା । କଂଗ୍ରେସ Protest, Prayerଏବଂ Peteion ରେ ସୀମିତ ଥିଲା । ୧୮୮୬ ରୁ ୧୯୦୨ ପର୍ଯ୍ୟନ୍ତ ମଧୁବାବୁ କଂଗ୍ରେସ ସଭାରେ ଯୋଗ ଦେଇ ଥିଲେ। ସ୍ୱତନ୍ତ୍ର ଓଡ଼ିଶା ପ୍ରସ୍ତାବ ଗଠନ ପାଇଁ ଦାବୀ କରୁଥିଲେ। ମାତ୍ର କଂଗ୍ରେସ କର୍ଣ୍ଣପାତ କରୁ ନଥାଏ । ତେଣୁ ସେ କଂଗ୍ରେସ ବର୍ଜନ କରି ଉତ୍କଳ ସମ୍ମିଳନୀ ଗଢ଼ିଲେ ।୧୯୦୫ରେ ବଙ୍ଗ ଭଙ୍ଗ ଆନ୍ଦୋଳନକୁ ବଙ୍ଗାଳୀମାନେ ବିରୋଧ କଲେ । ଏଇ ବଙ୍ଗାଳୀ ନେତାମାନେ କିନ୍ତୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଗଠନକୁ ମଧ୍ୟ ବିରୋଧ କରୁଥିଲେ। ମଧୁବାବୁ କହିଲେ - ତମେ ସବୁ Double Standard ର ନେତା ।

୧୯୧୨ ରେ ବଙ୍ଗଳା ପ୍ରେସିଡ଼େନ୍‌ସିରୁ ବିଚ୍ଛିନ୍ନହୋଇ ବିହାର ଓଡ଼ିଶା ରାଜ୍ୟ ଗଠିତ ହେଲା। ମଧୁବାବୁ ବିହାର ଓଡ଼ିଶା ଲେଜିସଲେଟିଭ କାଉନ୍‌ସିଲ୍‌ର ସଦସ୍ୟ ଥାଇ ହେଲେ ମନ୍ତ୍ରୀ - ମାସିକ ଦରମା ପାଞ୍ଚ ହଜାର।

ମଧୁବାବୁ ଯୁକ୍ତି କଲେ ଲୋକପ୍ରତିନିଧି ଅର୍ଥ ଲୋକ ସେବକ। ପ୍ରଜା ମାସକୁ ପାଞ୍ଚଟଙ୍କା ରୋଜଗାର କରିପାରୁନଥିବା ବେଳେ ମନ୍ତ୍ରୀ ପାଞ୍ଚହଜାର ଦରମା, ଗାଡ଼ି ଘୋଡ଼ା ବଙ୍ଗଳା। ନାଁ ଲୋକ ପ୍ରତିନିଧି ଅବୈତନିକ ହେବା ଉଚିତ୍। ସର୍କାର ନଶୁଣିବାରୁ ସେ ଇସ୍ତଫା ଦେଲେ।

ଆଜିର ନେତାଙ୍କ ଚରିତ୍ର : ମାସିକ ଲକ୍ଷ ଲକ୍ଷ ଟଙ୍କା ଆୟ, ଆଜୀବନ ସପରିବାର ପେନସନ । ମୋଗଲ ବାଦସାହାଙ୍କ ବିଳାସ ।

ଗତ ୨୨/୦୭/୦୮ରେ ଲୋକ ପ୍ରତିନିଧିଙ୍କ ମୁଖା ପୂରା ଖୋଲିଗଲା । ଗୋଟିଏ ଭୋଟର ଦାମ ଶହେ କୋଟି, ମନ୍ତ୍ରୀତ୍ୱ ଅନ୍ୟାନ୍ୟ ସୁବିଧା ସୁଯୋଗ । ଧନ୍ୟ ଏ ଦେଶ। ଏକଥା ଭାବିଲା ବେଳେ ମଧୁବାବୁଙ୍କ ସ୍ୱାଭିମାନ, ଅସ୍ମିତା କଥା ଚିନ୍ତା କରାଯାଇ ପାରେକି ?

ଯେଉଁ ସାଂସଦ ବା ବିଧାୟକ ମାନେ ଦଳର ନିର୍ଦ୍ଦେଶ ଅବମାନନା କରି କ୍ରସ୍ ଭୋଟିଂ କରିଛନ୍ତି, ସେମାନେ କେବଳ ନିଜ ନିର୍ବାଚନ ମଣ୍ଡଳୀ ପ୍ରତି ବିଶ୍ୱାସଘାତକତା କରିନାହାନ୍ତି। ସମଗ୍ର ଦେଶ ପ୍ରତି ବିଶ୍ୱାସ ଘାତକତା କରିଛନ୍ତି । ଧିକ୍ ଏମାନଙ୍କୁ ।

ଜାତି ନନ୍ଦିଘୋଷ ସେ କାହୁଁ ଟାଣିବ
ସ୍ୱାର୍ଥେ ଯାର ସଦାମନ
ଶାଗୁଣା ବିଲୁଆ ଚିକିତ୍ସକ ହେଲେ
ଶବକି ପାଇବ ପ୍ରାଣ ?

*ମହିଳା ମହାବିଦ୍ୟାଳୟ, ଅନୁଗୋଳ*

# ସୃଷ୍ଟିର ସୁରକ୍ଷା ଓ ବିକାଶରେ ସାହିତ୍ୟର ଭୂମିକା

ଅଜୟ୍ ଭାଇ
ଖଲାରୀ , ଅନୁଗୁଳ



ଆମର ଏ ସୃଷ୍ଟି ଯେତିକି ବିରାଟ ସେତିକି ବିଚିତ୍ର ମଧ୍ୟ। କ୍ଷୁଦ୍ର କୀଟ ଠାରୁ ଆରମ୍ଭ କରି ବୃହତ୍କାୟ ପ୍ରାଣୀ ପର୍ଯ୍ୟନ୍ତ, ପଦ୍ମ , ଗୋଲାପର ବାସ, ସୌନ୍ଦର୍ଯ୍ୟ ଠାରୁ ଆରମ୍ଭ କରି ଆଗ୍ନେୟଗିରିର ବିଭୀଷିକା ପର୍ଯ୍ୟନ୍ତ, ସବୁଜିମା ଭରା କ୍ଷେତ, ଜଙ୍ଗଲ ଠାରୁ ଆରମ୍ଭ କରି ବନ୍ୟା, ବାତ୍ୟା, ମରୁଡ଼ିର କରାଳ ଛାୟା ପର୍ଯ୍ୟନ୍ତ, ସୂର୍ଯ୍ୟଙ୍କ ତେଜଠାରୁ ଆରମ୍ଭ କରି ଗ୍ରହ , ନକ୍ଷତ୍ର, ଚନ୍ଦ୍ରମାର ଆଲୋକ ପର୍ଯ୍ୟନ୍ତ ସବୁକିଛି କୁ ନେଇ ଏ ସୃଷ୍ଟି ପରିପୂର୍ଣ୍ଣ ହୋଇ ଉଠିଛି। ସୃଷ୍ଟିର ଶ୍ରେଷ୍ଠ ପ୍ରାଣୀ ହିସାବରେ ଆମର ଦାୟିତ୍ୱ ହେଉଛି ଏହାର ସୁରକ୍ଷା ଓ ବିକାଶ ପ୍ରତି ଧ୍ୟାନ ଦେଇ ଆବଶ୍ୟକୀୟ କର୍ତ୍ତବ୍ୟ କରିଚାଲିବା।

ଆଜି ଶିକ୍ଷା, ସ୍ୱାସ୍ଥ୍ୟ, ବିଜ୍ଞାନ, ବୈଷୟିକ ନିଯୁକ୍ତି, ଶିଳ୍ପ ସଭ୍ୟତା ସହିତ ତାଳ ଦେଇ ବେକାରୀ , ଦାରିଦ୍ର୍ୟ, କୁସଂସ୍କାର, ପ୍ରାକୃତିକ ବିପର୍ଯ୍ୟୟ, ପରିବେଶ ପ୍ରଦୂଷଣ, ଆଇନ୍ ଶୃଙ୍ଖଳାର ଅବନତି ଜନିତ ସମସ୍ୟା ବୃଦ୍ଧି ପାଇବାରେ ଲାଗିଛି। ସମସ୍ତ ପ୍ରକାର ଜ୍ଞାନ, ସାଧନା, ସରକାରୀ, ବେସରକାରୀ ଯୋଜନା ସତ୍ତ୍ୱେ ମଣିଷ, ପଶୁପକ୍ଷୀ, ବୃକ୍ଷଲତା, ନଦୀ, ସମୁଦ୍ର, ଗ୍ରହ, ନକ୍ଷତ୍ରଙ୍କ ଦୁର୍ଦ୍ଦଶା ବୃଦ୍ଧି ପାଇବାରେ ଲାଗିଛି। ଦ୍ରୁତ ଜନସଂଖ୍ୟା ବୃଦ୍ଧି, ଅବିଚାରିତ ଭାବରେ ଜଙ୍ଗଲ ଲୋପ, କଂକ୍ରୀଟ ଜଙ୍ଗଲ ସୃଷ୍ଟି, ଶିଳ୍ପ ସ୍ଥାପନ, ବିଜ୍ଞାନର ଦୁରୁପଯୋଗ, ସ୍ୱାର୍ଥ ପରତା, ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ଆମେ କର୍ମ କରି ଚାଲିଛନ୍ତି। ମାତ୍ର ଏପରି କାର୍ଯ୍ୟର ପରିଣତି ପ୍ରତି ଧ୍ୟାନ ଦେଇନାହାନ୍ତି। ଏଥିପାଇଁ ଆଜି ସୃଷ୍ଟି କର୍ତ୍ତାଙ୍କ ଏହି ସୁନ୍ଦର ସୃଷ୍ଟିର ସୁରକ୍ଷା ଓ ବିକାଶ ବାଧାପ୍ରାପ୍ତ ହେଉଛି।

ସୃଷ୍ଟିର ଏହି ଦୁର୍ଦ୍ଦିନ ଆପେ ଆପେ ସଂଘଟିତ ହୋଇନାହିଁ। ଏଥିପାଇଁ ଆମେ ନିଜେ ହିଁ ଦାୟୀ ଅଟନ୍ତି। ଆମର ଭାବ , ଭାଷା ଓ କର୍ମ ଆଜି ଯଥାର୍ଥତା ଠାରୁ ଦୂରେଇ ଯାଉଛି। ନିଜର ସ୍ୱାର୍ଥପାଇଁ ଆମେ ପ୍ରକୃତି ଉପରେ ଅତ୍ୟାଚାର କରିଚାଲିଛନ୍ତି। କର୍ମ କ୍ଷେତ୍ରରେ ଅବହେଳା ପ୍ରଦର୍ଶନ ସହିତ ଅସତ୍ ମାର୍ଗ ଅବଲମ୍ବନ କରି ନିଜ ଆୟ ବୃଦ୍ଧି କରି , ସଞ୍ଚିତ ଅର୍ଥକୁ ବିଳାସ ବ୍ୟସନ , ବାହ୍ୟ ଆଡ଼ମ୍ବର ପ୍ରଦର୍ଶନରେ ବ୍ୟୟ କରି ଅନ୍ୟମାନଙ୍କ ସମ୍ମୁଖରେ ନିଜର ବଡ଼ ପଣ ପ୍ରଦର୍ଶନକୁ ଗୁରୁତ୍ୱ ଦେଇ ଚାଲିଚନ୍ତି। ସୃଷ୍ଟିର ସୁରକ୍ଷା ଓ ବିକାଶର ଦାୟିତ୍ୱ ଭୁଲି ଆମେ ତାର ବିନାଶ କରିଚାଲିଛନ୍ତି। ସୃଷ୍ଟି ର ଶ୍ରେଷ୍ଠ ତଥା ବିବେକବନ୍ତ ପ୍ରାଣୀ ହୋଇ ମଧ୍ୟ ଆମେ ବିବେକର ଆହ୍ୱାନକୁ ଭୁଲି ନିଜ ଇନ୍ଦ୍ରିୟର ବଶବର୍ତ୍ତୀ ହୋଇ କୁକାର୍ଯ୍ୟ କରିଚାଲିଛନ୍ତି। ଯେଉଁ ଗାଁ, ସହର, ରାଜ୍ୟର ମାଟି, ପାଣି, ପବନ, ଖାଦ୍ୟବସ୍ତ୍ର, ଶିକ୍ଷା ଦୀକ୍ଷାରେ ମଣିଷ ହୋଇ ନିଜକୁ ଯୋଗ୍ୟ କରି ଗଢ଼ିଲେ ସେହି ରାଜ୍ୟ, ସମାଜ ପ୍ରତି ଯେ ଆମର ଗୁରୁଦାୟିତ୍ୱ ରହିଛି, ତାହା ଆମେ ଭୁଲି ଯାଉଛନ୍ତି। ଆଉ କେତେ କାଳ ଆମେ ଏପରି ନିଜର ବିନାଶ କରିଚାଲିଥିବା ? ନିଜ ବିବେକର ଆହ୍ୱାନକୁ ସମ୍ମାନ ଜଣାଇ ବର୍ତ୍ତମାନ ଠାରୁ ଆମେ ସୃଷ୍ଟିର ସୁରକ୍ଷା ଓ ବିକାଶକୁ ତ୍ୱରାନ୍ୱିତ କରିବା ନିମନ୍ତେ ଯତ୍ନଶୀଳ ହେବା

ଉଚିତ୍ ।ଏପରି କାର୍ଯ୍ୟରେ ଆମକୁ ସାହିତ୍ୟ ଯଥେଷ୍ଟ ସହାୟତା ପ୍ରଦାନ କରିପାରିବ ।

ସାହିତ୍ୟର ମୂଳ ଲକ୍ଷ୍ୟ ହେଉଛି ସମୂହ ହିତ ସାଧନ । ସମାଜର ହିତ ନିମନ୍ତେ ସାହିତ୍ୟିକ ନିଜ ଚିନ୍ତା, ଚେତନାକୁ ଗଳ୍ପ, କବିତା, ପ୍ରବନ୍ଧ, ନାଟକ, ଉପନ୍ୟାସର ରୂପ ଦେଇ ଆମ ସମ୍ମୁଖରେ ଉପସ୍ଥାପନା କରିଥାଆନ୍ତି । ଏହା ପାଠ କରି ଆମେ ନିଜକୁ, ନିଜ ସମାଜକୁ ଜାଣିବାର ସୁଯୋଗ ପାଆନ୍ତି । ସାହିତ୍ୟର ଉନ୍ନତିରେ ଜାତିର ଉନ୍ନତି ସମ୍ଭବ, ଅନ୍ୟାୟ , ଅସତ୍ୟ ବିରୁଦ୍ଧରେ ଲେଖନୀ ଚାଳନା କରିବା ସାହିତ୍ୟିକାର ଧର୍ମ । ଏହାକୁ ଦୃଷ୍ଟିରେ ରଖି ସାହିତ୍ୟିକଗଣ ଯୁଗଉପଯୋଗୀ, ବାସ୍ତବଧର୍ମୀ , ଗଠନ ମୂଳକ ସାହିତ୍ୟ ରଚନା କରି ତାହାକୁ ଜନସାଧାରଣଙ୍କ ନିକଟତର କରାଇବାକୁ ଉଦ୍ୟମ କରିବା ଉଚିତ୍ । ସାହିତ୍ୟର ଶବ୍ଦ, ଭାବ ଯେପରି ସରଳ, ବୋଧଗମ୍ୟ ହୋଇ ସାଧାରଣ ଜନତାଙ୍କ ହୃଦୟକୁ ସ୍ପର୍ଶ କରିପାରିବ , ସେଥିପାଇଁ ସାହିତ୍ୟିକଗଣଙ୍କୁ ଧ୍ୟାନ ଦେବାକୁ ହେବ । ଏହା ଫଳରେ ସାହିତ୍ୟ ସ୍ରଷ୍ଟାର ଉଦ୍ଦେଶ୍ୟ ସଫଳ ହେବା ସହିତ ତାଙ୍କ ଦ୍ୱାରା ସୃଷ୍ଟ ସାହିତ୍ୟ କାଳଜୟୀ ହୋଇ ପାରିବ ।

ସାହିତ୍ୟ ହିଁ ଆମ ଦୁଃଖ, ଦୁର୍ଦ୍ଦଶାକୁ ଦୂର କରି ଆମକୁ ସୁଖ, ସମୃଦ୍ଧି ପ୍ରଦାନ କରି ପାରିବ । ଆମ ଆତ୍ମବିଶ୍ୱାସ ବୃଦ୍ଧି କରି ଆମକୁ ନୂତନ ମାର୍ଗ ଦର୍ଶନ କରାଇ ଆମର ସୁରକ୍ଷା ଓ ବିକାଶକୁ ତ୍ୱରାନ୍ୱିତ କରିପାରିବ । ତେବେ ଏଥିପାଇଁ ଆମେ ନିଜ ପସନ୍ଦର ସାହିତ୍ୟ ପୁସ୍ତକ ଖର୍ଦ୍ଦିକରି ତାହା ପାଠ କରିବା ସଂଗେ ସଂଗେ ପୁସ୍ତକର ବାର୍ତ୍ତାକୁ ନିଜ ଆଚରଣରେ ପ୍ରଦର୍ଶନ କରିବା ଉଚିତ । ଉପଯୋଗୀ ସାହିତ୍ୟ ପୁସ୍ତକକୁ ଆମେ ବିଭିନ୍ନ ଉତ୍ସବରେ ନିଜ ବନ୍ଧୁମାନଙ୍କୁ ଉପହାର ରୂପେ ପ୍ରଦାନ କରିବା ସହିତ ଉପଯୁକ୍ତ ସାହିତ୍ୟ, ସାହିତ୍ୟିକଙ୍କ ମହତ୍ୱ ଉପରେ ଆଲୋଚନା କରିବା, ସାହିତ୍ୟିକଙ୍କୁ ସମ୍ମାନିତ କରିବା ଦିଗରେ ପଦକ୍ଷେପ ନେବା ଆବଶ୍ୟକ । ସାହିତ୍ୟ ମାଧ୍ୟମରେ ସୃଜନଶୀଳତା ସୃଷ୍ଟି କରି ସାମାଜିକ ବିକାଶ, ସୁରକ୍ଷାରେ ସହାୟକ ହେଉଥିବା ଦୁସ୍ଥ ସାହିତ୍ୟିକଙ୍କୁ ସରକାରୀ ବେସରକାରୀ ସ୍ତରରେ ସାହାଯ୍ୟ ପ୍ରଦାନ କରି ସେମାନଙ୍କର ଲେଖନୀ ଚାଳନା କରିବା ଶକ୍ତିକୁ ଉତ୍ସାହିତ କରିବା ଉଚିତ୍ । ଏହା ଫଳରେ ଆମ ସାହିତ୍ୟ, ସାହିତ୍ୟିକ ଏବଂ ସାହିତ୍ୟ ମାଧ୍ୟମରେ ସୃଷ୍ଟିର ତଥା ଆମ ସମସ୍ତଙ୍କର ସୁରକ୍ଷା ଓ ବିକାଶ ସମ୍ଭବ ହୋଇପାରିବ ।

# ଶ୍ରୀ ହରିନାମ ସଂକୀର୍ତ୍ତନର ବ୍ୟବସ୍ଥା କାହିଁକି ?

ହରିନାମ କୀର୍ତ୍ତନ ସହିଷ୍ଣୁତା ଜାତ କରି ସ୍ୱାର୍ଥପରତା, ପରସ୍ପର ମଧ୍ୟରେ ବାଦ ବି ସମ୍ବାଦ ଦୂରକରି ସୁନାଗରିକ, ସୁସ୍ଥ ସମାଜ ଗଠନ କରାଏ।

ଶ୍ରୀ ମାୟାଧର ସାହୁ

ଶ୍ରୀ ଚୈତନ୍ୟ ମହାପ୍ରଭୁ ହରିନାମ ସଂକୀର୍ତ୍ତନ ରୂପକ ସାଧନ ବିଷୟରେ ଜଗତକୁ ଶିକ୍ଷା ଦେଇଗଲେ। ଏହି ହରିନାମ ହେଲା ନାମବ୍ରହ୍ମ ବା ଅପ୍ରାକୃତ ଶବ୍ଦବ୍ରହ୍ମ। ଏହା ଗୋଟିଏ ସୁବୈଜ୍ଞାନିକ ଶିକ୍ଷା। ଏହି ପ୍ରାକୃତ ବ୍ରହ୍ମାଣ୍ଡ ପ୍ରାକୃତ ଶବ୍ଦ ଦ୍ୱାରା ଚାଳିତ। ଶବ୍ଦକୁ ବାଦ୍ ଦେଲେ ଏ ବ୍ରହ୍ମାଣ୍ଡ ଚଳି ପାରିବ ନାହିଁ। ଶବ୍ଦ ମାଧ୍ୟମରେ ହିଁ ସୁଖ ଦୁଃଖ ଇତ୍ୟାଦିର ଅନୁଭୂତି ହୋଇଥାଏ। ଶବ୍ଦକୁ ବାଦ୍‌ଦେଲେ ଏହି ଅନୁଭୂତି ଲାଭ ଅସମ୍ଭବ ହୋଇ ପଡ଼ିବ। ପରସ୍ପର ମଧ୍ୟରେ ସଂପର୍କ ସ୍ଥାପନର ମାଧ୍ୟମ ମଧ୍ୟ ଶବ୍ଦ। ଶବ୍ଦ ମାଧ୍ୟମରେ ଜଣେ ଜଣକର ବନ୍ଧୁ ହୋଇଥାଏ ଓ ଜଣେ ଜଣକର ଶତ୍ରୁ ହୋଇଥାଏ। ସୁତରାଂ ଏହି ପ୍ରାକୃତ ଜଗତର ଚଳାଚଳର ପ୍ରାକୃତ ଶବ୍ଦହିଁ ପ୍ରାଧାନ୍ୟ ପରିଲକ୍ଷିତ ହୋଇଥାଏ। ପ୍ରାକୃତ ଜଗତ ମାୟା ଦ୍ୱାରା ପରିଚାଳିତ । ଏଠାକାର ପ୍ରତ୍ୟେକ ବସ୍ତୁ ଅନିତ୍ୟ। ଏହି ଜଗତ କେବଳ ଦୁଃଖ, ଶୋକ , ଜରା, ବ୍ୟାଧି ଓ ନାନା ଯନ୍ତ୍ରଣାର ସ୍ଥାନ। ଏଠାରେ ସୁଖ ବୋଲି ଯାହାକୁ ମନେକରି ତାହା ପଛରେ ସମସ୍ତେ ଛୁଟୁଛନ୍ତି ତାହା ବସ୍ତୁତଃ ସୁଖ ନୁହେଁ, ସୁଖର ଆବରଣରେ ଚରମ ଦୁଃଖ ହିଁ କେବଳ । ଏହା ଭ୍ରାନ୍ତି ଜନକ (**deceptive**)। ପରସ୍ପର ପ୍ରତି ଈର୍ଷା, ଦ୍ୱେଷ ଓ ସ୍ୱାର୍ଥପରତାରେ ଏ ସଂସାର ପରିପୂର୍ଣ୍ଣ, ପୁଣି ଜରା, ବ୍ୟାଧି, ଦୁଃଖ ଓ ଶୋକରେ ପୃଥିବୀ ବାସୀ ସମସ୍ତେ ଜର୍ଜରିତ।

ଏହି ମାୟିକ ଜଗତ ହେଲା ନିତ୍ୟ ଜଗତର ଛାୟା ସ୍ୱରୂପ। ନିତ୍ୟବସ୍ତୁ ଥିବାରୁ ହିଁ ଅନିତ୍ୟ ବସ୍ତୁର ସତ୍ତା ଉପଲବ୍ଧ ହୋଇଥାଏ। ଶ୍ରୀ ଭଗବାନଙ୍କ ସୃଷ୍ଟିରେ ଭଲ ଓ ମନ୍ଦ, ଆଲୋକ ଓ ଅନ୍ଧକାର , ଉଚ୍ଚ ଓ ନୀଚ ଇତ୍ୟାଦି ବିପରୀତ ଭାବାତ୍ମକ ଶବ୍ଦ ଓ ବସ୍ତୁ ପରିଲକ୍ଷିତ ହୋଇଥାଏ। ସେହିପରି ମାୟାସୃଷ୍ଟ ପ୍ରାକୃତ ବ୍ରହ୍ମାଣ୍ଡର ବିପରୀତ ବା ମୂଳ ହେଲା ଅପ୍ରାକୃତ ବ୍ରହ୍ମାଣ୍ଡ। ଏହି ଅପ୍ରାକୃତ ବ୍ରହ୍ମାଣ୍ଡ ହେଉଛି ଶ୍ରୀ ଭଗବାନଙ୍କର ନିତ୍ୟ ବିହାର ସ୍ଥଳୀ। ଏଠାରେ ଦୁଃଖ, ଶୋକ, ଜରା ବ୍ୟାଧି ଓ ମୃତ୍ୟୁ ଇତ୍ୟାଦି ଦୁଃଖାତ୍ମକ ଶବ୍ଦର ସତ୍ତା ନାହିଁ। ଏହା ଅଶୋକ, ଅଭୟ ଓ ଅମୃତମୟ ଭୂମିକା ।

ଯେଉଁମାନେ ଶ୍ରୀ ହରିନାମ କୀର୍ତ୍ତନ ରୂପକ ଶବ୍ଦବ୍ରହ୍ମର ଆରାଧନା କରନ୍ତି ସେହିମାନେ ହିଁ ଏହି ମାୟା ସଂସାରରୁ ଉତ୍ତୀର୍ଣ୍ଣ ହୋଇ ସେହି ଅପ୍ରାକୃତ ଅଶୋକ, ଅଭୟ ଓ ଅମୃତମୟ ଧାମରେ ବାସ କରିବାର ସୁଯୋଗ ଲାଭ କରି ନିତ୍ୟାନନ୍ଦ ପ୍ରାପ୍ତିର ଅଧିକାରୀ ହୁଅନ୍ତି। ଏହି ହରିନାମ **କୀର୍ତ୍ତନର ପ୍ରଣାଳୀ** ଯାହା ସଂକୀର୍ତ୍ତନୈକ ପିତା- **ଶ୍ରୀ ଚୈତନ୍ୟ ମହାପ୍ରଭୁ** ଶିକ୍ଷା ଦେଇଛନ୍ତି। ତାହା ଏହିପରି - **ତୃଣାଦପି ସୁନୀଚେନ ତରୋରପି ସହିଷ୍ଣୁନା, ଅମାନିନା ମାନଦେନ କୀର୍ତ୍ତନୀୟଃ ସଦାହରିଃ।**"ଅର୍ଥାତ୍ ନିଜକୁ ତୃଣଠାରୁ ମଧ୍ୟ ନୀଚ ଜ୍ଞାନ କରି, ତରୁଠାରୁ ମଧ୍ୟ ସହିଷ୍ଣୁ ହୋଇ ଏବଂ କାହାରିଠାରୁ କୌଣସି ସମ୍ମାନ ଆଶା ନକରି ଭଗବତ୍ ସୃଷ୍ଟ ଅବ୍ରହ୍ମସ୍ତମ୍ବ ପ୍ରତ୍ୟେକ ଜୀବକୁ ଯଥାଯଥ ସମ୍ମାନ ଦେଇ ଏହି ହରିନାମ

କୀର୍ତ୍ତନ କରିବାକୁ ହେବ । ଏହି ଶିକ୍ଷା ମଧ୍ୟ ସଂପୂର୍ଣ୍ଣ ବିଜ୍ଞାନ ଭିତ୍ତିକ । ଏହି ପ୍ରକାର ଆଚରଣ ଦ୍ୱାରାହିଁ ହୃଦୟର ରଜସ୍ତମୋଗୁଣ ଦୂରୀଭୂତ ହୋଇ ଦୈନ୍ୟ ଓ ଆର୍ତ୍ତିରେ ତାହା ଭରିଯିବ ଏବଂ ସେହି ଆର୍ତ୍ତିଯୁକ୍ତ ହୋଇ ହରିନାମ କଲେ ତାହା ଶ୍ରୀଭଗବାନଙ୍କ ହୃଦୟକୁ ବିଚଳିତ କରାଇ ତାଙ୍କୁ ପ୍ରାର୍ଥନାକାରୀ ପ୍ରତି କୃପୋନ୍ମୁଖ କରାଇବ । ଶ୍ରୀ ଭଗବାନ୍ ସର୍ବକ୍ଷଣ ଅପ୍ରାକୃତ ଭୂମିକାରେ ଥିବା ହେତୁ ପ୍ରାକୃତ ଭୂମିକାରେ ରହି ତାଙ୍କୁ ଡ଼ାକିଲେ ଆମ ଡ଼ାକ ତାଙ୍କ ପାଖରେ ପହଞ୍ଚି ପାରିବ ନାହିଁ ।

ଏହି ଶ୍ଲୋକରୁ ତାହାର କାରଣ ଜଣା ପଡ଼ିବ :

ହ୍ଲାଦିନୀ ସନ୍ଧିନୀ ସମ୍ବିତ୍ ତ୍ୱୟେକା ସର୍ବସଂସ୍ଥିତୌ,
ହ୍ଲାଦତାପ କାରୀ ମିଶ୍ରା ତ୍ୱୟି ନୋ ଗୁଣବର୍ଜିତେ ।
(ଶ୍ରୀ ବିଷ୍ଣୁ ପୁରାଣ)

ଅର୍ଥାତ୍ ଶ୍ରୀ ଭଗବାନ୍‌ଙ୍କ ଠାରେ ସନ୍ଧିନୀ , ସମ୍ବିତ୍ ଓ ହ୍ଲାଦିନୀ ଏହି ତିନୋଟି ଅପ୍ରାକୃତ ବୃତ୍ତି ଅଛି ଓ ଜୀବଠାରେ ସତ୍ତ୍ୱ , ରଜଃ , ତମଃ ଏହି ତିନୋଟି ପ୍ରାକୃତ ବୃତ୍ତି ଅଛି । ସତ୍ତ୍ୱ ଗୁଣ ସ୍ୱଚ୍ଛ ହୋଇଥିବାରୁ ତାହା ତାଙ୍କ ଉପାସନାର ପ୍ରତିକୂଳ ନୁହେଁ । କିନ୍ତୁ ରଜ ସ୍ତମୋଗୁଣ ସଂପୂର୍ଣ୍ଣ ପ୍ରତିକୂଳ । ଏ ଜଗତରେ ପ୍ରତ୍ୟେକ ଜୀବ ଏହି ରଜସ୍ତମୋ ଗୁଣାବ୍ରତ । ସତ୍ତ୍ୱ ଗୁଣସଂପନ୍ନ ବ୍ୟକ୍ତି ଖୁବ୍ ବିରଳ । ତେଣୁ ସେହି ଅବସ୍ଥାରେ ଶ୍ରୀ ହରିନାମ ସଂକୀର୍ତ୍ତନ କଲେ ଶ୍ରୀ ଭଗବାନଙ୍କ କୃପାଦୃଷ୍ଟି ଆକର୍ଷଣର ସହାୟକ ହୋଇ ପାରିବ ନାହିଁ । ଅତଏବ ଆମକୁ ରଜ ସ୍ତମୋଗୁଣ ମୁକ୍ତହୋଇ ହିଁ ହରିନାମ କରିବାକୁ ପଡ଼ିବ । ଏହାକିପରି ହେବ ତାହାର ବାଟ ଶ୍ରୀମଦ୍‌ଭଗବଦ୍‌ଗୀତା ଓ ଶ୍ରୀମଦ୍‌ଭାଗବତରେ ପରିଷ୍କାର ଭାବେ କୁହାଯାଇଛି । "ସର୍ବଜୀବେ କର ସମ୍ମାନ ଜାଣି କୃଷ୍ଣ ଅଧିଷ୍ଠାନ" , ଅର୍ଥାତ ଯେ ଅନ୍ତର୍ଯ୍ୟାମୀ ଦୃଷ୍ଟିରେ ଆବ୍ରହ୍ମସ୍ତମ୍ବ ପ୍ରତ୍ୟେକ ପ୍ରାଣୀକୁ ସମ୍ମାନ କରିବ ତାହାର ହୃଦୟରୁ ରଜସ୍ତମୋଗୁଣ ଦୂର ହୋଇ ତହିଁରେ ତରୁସମ ଏହି ସହିଷ୍ଣୁତା ଗୁଣ ସଞ୍ଚାରିତ ହେବ । ଶ୍ରୀ ଭଗବାନ୍ ପ୍ରତ୍ୟେକ ଜୀବର ଇଚ୍ଛାଶକ୍ତି ଓ କ୍ରିୟାଶକ୍ତିର ଚାଳକ । ତେଣୁ ପ୍ରତ୍ୟେକ ଜୀବ ଯାହା କରୁଛି ତାଙ୍କରି ପ୍ରେରଣାରେ ହିଁ ଅନୁଷ୍ଠିତ ହେଉଛି । କୌଣସି ଜୀବ କାହାରି କ୍ଷତି କରୁଥିଲେ ବା କାହାପ୍ରତି ଖରାପ ବ୍ୟବହାର କରୁଥିଲେ ତାହାର ଆଚରଣରେ କୌଣସି ଦୋଷ ନଦେଖି ଶ୍ରୀ ପରମାତ୍ମାଙ୍କ ପ୍ରେରଣାରେ ହିଁ ସେ ଏପରି କରୁଛି ଏହି ବିଚାରରେ ତାକୁ ସହିଯିବାକୁ ହେବ ।

ଏହି ସହିଷ୍ଣୁତା ଗୁଣ ଯେ କେବଳ ଶ୍ରୀହରିନାମ କୀର୍ତ୍ତନର ଯୋଗ୍ୟତା ସମ୍ପାଦକ , ତାହା ନୁହେଁ , ଏହା ସମାଜରେ ଗୋଟିଏ ସୁନାଗରିକ ହେବାର ମଧ୍ୟ ସହାୟକ ହୋଇଥାଏ । ଅନ୍ତର୍ଯ୍ୟାମୀ ଦର୍ଶନ ଦ୍ୱାରା ସ୍ୱାର୍ଥପରତାହେତୁ ପରସ୍ପର ମଧ୍ୟରେ ବାଦ ବିସମ୍ବାଦ ଇତ୍ୟାଦିର ସ୍ଥାନ ଆଉ ରହିବ ନାହିଁ । ସର୍ବତ୍ର ସହନଶୀଳତା ବିରାଜମାନ କରିବ । ତେଣୁ ସମସ୍ତେ ଶାନ୍ତିରେ ବସବାସ କରପାରିବେ । କେବଳ ମନୁଷ୍ୟ ନୁହେଁ , ଭଗବତ୍ ସୃଷ୍ଟ ଆବ୍ରହ୍ମସ୍ତମ୍ବ ପ୍ରତ୍ୟେକ ପ୍ରାଣୀକୁ ଏହି ସମ୍ମାନ ଦେବାକୁ ହିଁ ହେବ । ଏହାହିଁ ହୃଦୟରୁ ରଜସ୍ତମୋଗୁଣକୁ ସଂପୂର୍ଣ୍ଣ ରୂପେ ଦୂରକରି ନିତ୍ୟ ଶାନ୍ତି ଲାଭର ପଥ ପରିଷ୍କାର କରିବ ।

ଶ୍ରୀଭଗବାନ୍ ଯେ , ଅନ୍ତର୍ଯ୍ୟାମୀ ରୂପେ ପ୍ରତ୍ୟେକ ଜୀବର ଇଚ୍ଛାଶକ୍ତି ଓ କ୍ରିୟା ଶକ୍ତିର ଚାଳକ ତାହା ଶ୍ରୀମଦ୍‌ଭଗବଦ୍ ଗୀତା( ୧୮/୬୧ )ରେ ବର୍ଣ୍ଣିତ ହୋଇଛି :

"ଈଶ୍ୱରଃ ସର୍ବଭୂତାନାଂ ହୃଦେଶେଽର୍ଜୁନ ତିଷ୍ଠତି ।
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।।"

ଅର୍ଥାତ୍ ହେ ଅର୍ଜୁନ! ଶରୀର ରୂପ ଯନ୍ତ୍ରରେ ଆରୂଢ଼ ସମସ୍ତ ପ୍ରାଣୀଙ୍କୁ ଅନ୍ତର୍ଯ୍ୟାମୀ ପରମେଶ୍ୱର ନିଜମାୟାରେ ସେମାନଙ୍କ କର୍ମାନୁସାରେ ଭ୍ରମଣ କରାଉଛନ୍ତି।

"ପରସ୍ୱ ଭାବକର୍ମାଣି ନ ପ୍ରଶଂସେନ୍ନ ଗର୍ହୟେତ୍
ବିଶ୍ୱଏକାତ୍ମକଂ ପଶ୍ୟନ୍ ପ୍ରକୃତ୍ୟା ପୁରୁଷେଣ ଚ ।।"

ଅର୍ଥାତ୍ ପ୍ରକୃତି ଓ ପୁରୁଷ ସହ ଏହି ନିଖିଳ ବିଶ୍ୱକୁ ଏକ ଅନ୍ତର୍ଯ୍ୟାମୀ ପୁରୁଷଙ୍କ ଦ୍ୱାରା ନିୟନ୍ତ୍ରିତ ଜାଣି ଅନ୍ୟର ସ୍ୱଭାବ ଓ କର୍ମ ସମୂହର ପ୍ରଶଂସା ବା ନିନ୍ଦା କରିବ ନାହିଁ।

"ନରେଷ୍ୱଭୀକ୍ଷ୍ଣଂ ମଦ୍ଭାବଂ ପୁଂସୋ ଭାବୟତୋଽଚିରାତ୍।
ସ୍ପର୍ଦ୍ଧା ସୂୟାତିରସ୍କାରାଃ ସାହଙ୍କାରା ବିୟନ୍ତି ହି ।"

(ଶ୍ରୀ-ମଦ୍ଭାଗବତ : ୧୧/୨୯/୧୫)

ଅର୍ଥାତ୍ ଯେ ମାନବମାନଙ୍କ ମଧ୍ୟରେ ସର୍ବଦା ମୋର ଅବସ୍ଥାନ ଚିନ୍ତା କରେ ସେହିପରି ବ୍ୟକ୍ତିର ଅହଙ୍କାର , ଦମ୍ଭ, ପରଶ୍ରୀକାତରତା ଓ ପରନିନ୍ଦାଦି ଦୁର୍ଗୁଣ ଅଚିରେ ବିନଷ୍ଟ ହୁଏ।

ଅତଏବ କାହାର ନିନ୍ଦା ନକରି ଏହି ଅନ୍ତର୍ଯ୍ୟାମୀ ଦୃଷ୍ଟିଯୁକ୍ତ ହୋଇ ପ୍ରତ୍ୟେକ ପ୍ରାଣୀକୁ ସମ୍ମାନ କରିବାହିଁ ଭଗବତ୍ ପ୍ରାପ୍ତି ଓ ନିତ୍ୟାନନ୍ଦ ଲାଭର ଏକ ମାତ୍ର ଉପାୟ । ପୁଣି ଏହାହିଁ ସମାଜରେ ସୁନାଗରିକ ହେବାର ଏକମାତ୍ର ପନ୍ଥା । ଏହା କରି ନପାରିଲେ ଏ ସମାଜ ଧ୍ୱଂସ ମୁଖକୁ ଯିବହିଁ ଯିବ।

ଅତଏବ ଏହି ସବୁ ମହାଜନମାନଙ୍କର ଅନୁଭବସିଦ୍ଧ ଶାସ୍ତ୍ରବାକ୍ୟକୁ ମାନି ତଦନୁଯାୟୀ ଅନ୍ତର୍ଯ୍ୟାମୀ ଦୃଷ୍ଟିରେ ଆବ୍ରହ୍ମସ୍ତମ୍ଭ ପ୍ରତ୍ୟେକ ଜୀବକୁ ସମ୍ମାନ କରିବା ହିଁ ଆମର ଯାବତୀୟ ଶିକ୍ଷାର ସାର ସ୍ୱରୂପ। ତେଣୁ ଛାତ୍ର ଜୀବନରୁ ପ୍ରତ୍ୟେକଙ୍କୁ ଏହିପରି ଶିକ୍ଷା ଦିଆଯିବା ଅତ୍ୟାବଶ୍ୟକ। ତାହାହେଲେ ସେମାନେ ଭବିଷ୍ୟତରେ ସୁନାଗରିକ ହୋଇ ସମାଜର ମଂଗଳ ସାଧନରେ ବ୍ରତୀହେବା ସଂଗେ ସଂଗେ ହରିନାମ ସଂକୀର୍ତ୍ତନ ରୂପେ ସାଧନର ଆଶ୍ରୟ ନେଇ ଅନାୟାସରେ ଏ ଭବସାଗରରୁ ଉତ୍ତୀର୍ଣ୍ଣ ହୋଇ ପାରିବେ । ଏ ଘୃଣ୍ୟ ଓ କୃତଘ୍ନତାପୂର୍ଣ୍ଣ ସଂସାରକୁ ଆଉ ସେମାନଙ୍କୁ ଆସିବାକୁ ପଡ଼ିବ ନାହିଁ।

*କୋଶଳା, ଜି- ଅନୁଗୋଳ*

(ବି.ଦ୍ର : ଲେଖକ ବ୍ରଜମଣ୍ଡଳ ପରିକ୍ରମା ଓ ଗୌଡ଼ମଣ୍ଡଳ ପରିକ୍ରମା ଗ୍ରନ୍ଥମାନଙ୍କର ରଚୟିତ। ଜଣେ ଆଦର୍ଶ ଶିକ୍ଷକ - ସଂପାଦକ)

# କି ଥିଲା ଏ ରାଜ୍ୟ

ପ୍ରତାପ କୁମାର ଦ୍ୱିବେଦୀ

ଆଜକୁ ତିନିଶହ ବର୍ଷ ତଳର କଥା । ସେ ସମୟରେ ପାଲଲହଡ଼ାକୁ ସହର ଜାତିର ସର୍ଦ୍ଦାର ଶାସନ କରୁଥିଲେ । ନିଜେ ନିରକ୍ଷର ଥିବାରୁ ସେ ନିଜକୁ ବଡ଼ ଅପମାନିତ ମନେ କରୁଥିଲେ । ଥରେ ସେ କୌଶଳକରି ଗୋଟିଏ ରାଜ ପରିବାରର ଛୋଟ ବାଳକଟିଏ ପାଇ ତାକୁ ରାଜ ସିଂହାସନରେ ବସାଇଲେ । ସେହି ରାଜକୁମାରଟିକୁ ପାଳଗଦାରୁ ପାଇଥିବାରୁ ତାଙ୍କର ନାମ ସନ୍ତୋଷ ପାଳ ରଖିଲେ । ତାଙ୍କ ରାଜ୍ୟାଭିଷେକ ପୂର୍ବରୁ ପାଳଲହଡ଼ାର ନାମ ଲହଡ଼ାଗଡ଼ ଥିଲା । ଏହାପରେ ପାଳବଂଶ ରାଜୁତି ହେବାରୁ ପାଳଲହଡ଼ା ବୋଲି ନାମିତ ହେଲା ।

ଲୋକେ କହନ୍ତି ପାଳଲହଡ଼ା ରାଜାଗଣ ଅତି ଧାର୍ମିକ, ପରୋପକାରୀ କର୍ତ୍ତବ୍ୟନିଷ୍ଠ ଓ ପ୍ରଜା ବତ୍ସଳ ଥିଲେ । ରାଜ୍ୟ ଅତି ଶାନ୍ତି ଶୃଙ୍ଖଳାରେ ଚଳାଉଥିଲେ ବ୍ୟାସକବି ଫକୀର ମୋହନଙ୍କ ପରି କବି ମଧ୍ୟ ଏହି ରାଜ୍ୟର ଶୋଭା ମଣ୍ଡନ କରି ରାଜ୍ୟକୁ ଗୌରବାନ୍ୱିତ କରୁଥିଲେ । ଦିନପରେ ରାତି ଆଉ ରାତିପରେ ଦିନ ଗଡ଼ିଚାଲିଛି। ସମୟ କାହାକୁ ଅପେକ୍ଷା କରେନି । ସେକାଳ ପଖାଳ ଆଉ ନାହିଁ। ଏବେ ନୂତନ ଯୁଗର ଆବିର୍ଭାବ ।

ବର୍ତ୍ତମାନର ରାଜା ରାମଚନ୍ଦ୍ର ମୁନୀ ପାଳ ଏବଂ କନିଷ୍ଠଭାଇ କୃଷ୍ଣଚନ୍ଦ୍ର ପାଳ, ଦୁଇ ଭାଇ । ଶୁଣାଯାଏ ବୋଧେ ରାଜା ରାମଚନ୍ଦ୍ର ଅଯୋଧ୍ୟାର ଅବତାର ନେଇ ଲକ୍ଷ୍ମଣଙ୍କ ସହିତ ଏଇଠି ଜନ୍ମ ନେଇ ରାମକୃଷ୍ଣ ନାମରେ ନାମିତ ହୋଇଛନ୍ତି ।

ରାଜା ରାମଚନ୍ଦ୍ର ମୁନୀ ପାଳଙ୍କ ବାପା ଅନେକ ଦିନ ହେଲାଣି ଚାଲିଗଲେଣି । ରାଜମାତା ସାନପୁଅ କୃଷ୍ଣଚନ୍ଦ୍ର ପାଳଙ୍କ ନାମରେ ସମସ୍ତ ଜମିବାଡ଼ି ଘରଦ୍ୱାର ୱିଲ୍ କରିଦେଲେ । କିଛିଦିନ ପରେ ରାଜମାତା ମଧ୍ୟ ଇହଲୀଳା ସମ୍ବରଣ କଲେ । ହେଲେ କୃଷ୍ଣଚନ୍ଦ୍ର ପାଳ ଟିକିଏ ଭିନ୍ନ ପ୍ରକୃତିର ଥିଲେ । ଯେତେ ଜମିବାଡ଼ିଥିଲା ସବୁ ବିକ୍ରି କରି ଆନନ୍ଦ ଉଲ୍ଲାସରେ କାଳାତିପାତ କଲେ। ମଦ୍ୟପାନ କରିବା ପାଇଁ ମଧ୍ୟ ପଛାଇଲେ ନାହିଁ। ବସି ଖାଇଲେ ନଈବାଲି ସରେ, ଅକଳନ ସମ୍ପତ୍ତି ତାହୁଁ ତାହୁଁ ଧୂଳିସାତ ହେବାରେ ଲାଗିଲା । ଦିନକୁ ଦିନ ଅବସ୍ଥା ଅତି ଖରାପ ଆଡ଼କୁ ଗତି କଲା । ତାଙ୍କର ସ୍ତ୍ରୀ ମଧ୍ୟ ସ୍ୱର୍ଗବାସୀ । ନିଜେ ନିଶା ପିଇ ପିଇ ଡ଼ାକ୍ତରଙ୍କ ବାରଣ ସତ୍ତ୍ୱେ ଲିଭର ରୋଗରେ ପୀଡ଼ିତ ହୋଇ ୫ଟି ସନ୍ତାନକୁ ଅନାଥ କରି ଆରପାରିକୁ ଚାଲିଗଲେ । ମଲା ପୂର୍ବରୁ ଆଉ ହାତେ ମଧ୍ୟ ସ୍ଥାନ ନଥିଲା ।

ଏଣେ ବଡ଼ଭାଇ ରାମଚନ୍ଦ୍ର ମୁନି ପାଳ । ସାକ୍ଷାତ ରାମଚନ୍ଦ୍ର । ଆବାଳ ବୃଦ୍ଧ ବନିତା ତାଙ୍କ ଉପରେ ଭାରି ଖୁସି । ଅତି ଶୀଘ୍ର ସରଳ ଏବଂ ସହାସ୍ୟ ମୁଖ ସମସ୍ତଙ୍କୁ ଆଚମ୍ବିତ କରିଥାଏ । ହେଲେ କଣ କରିବେ ? ସାନଭାଇ ସବୁ ସମ୍ପତ୍ତି ଚଳୁକରିଦେଲେ ମଧ୍ୟ ଭାଇକୁ କେବେ ଚୁ ବୋଲି କରିନାହାନ୍ତି । ତାଙ୍କର ଜମି ବାଡ଼ି ମଧ୍ୟ କିଛି ନାହିଁ । କେବଳ ଘର ଖଣ୍ଡିକ । ତଥାପି ସେହି ଭଙ୍ଗା ରାଜ ଉଆସରେ ଅତି ହସ ଖୁସି ମଜା ମଜଲିସରେ କାଳାତିପାତ କରନ୍ତି । ତାଙ୍କୁ ଦାରିଦ୍ର୍ୟ କଷାଘାତ ବିବ୍ରତ କରିପାରିନି । ପାଳଲହଡ଼ାରେ ଆଜି ପର୍ଯ୍ୟନ୍ତ ଚୋରି ଡ଼କାୟତି, ହିଂସା, ରାଗ ପ୍ରବେଶ କରିପାରିନି । ଲୋକେ ଖୁସିରେ ଘର ସଂସାର କରି ରହନ୍ତି । ଲୋକେ କହନ୍ତି ସତରେ ରାଜା ଦଶରଥଙ୍କ ପୁଅ ରାମଚନ୍ଦ୍ର ଆମ ପାଳଲହଡ଼ାରେ ଆସି ସବୁ ଦୁଃଖ ଶୋକ ହରଣକରି ନେଉଛନ୍ତି ସବୁରି କଣ୍ଠରୁ ଭାସି ଉଠେ ଧନ୍ୟ ଧନ୍ୟ "ରାଜା ରାମଚନ୍ଦ୍ର ମୁନୀ ପାଳ" ଆଉ କେହି କେହି ମଧ୍ୟ କହନ୍ତି "କି ଥିଲା ଏ ରାଜ୍ୟ କିହୋଇଲା ଆଜ"।

*ଗ୍ରା.ପୋ/ଅ : ପାଳଲହଡ଼ା,*

## କୋକୁଆ ଭୟ

*ସୁଧାକର ପଟ୍ଟନାୟକ*

ସୋମନାଥ ସିଂହଙ୍କ ପ୍ରତି କେବଳ ପ୍ରତିବେଶୀ ରାଜାମାନେ ନୁହନ୍ତି, ଆର୍ମୀ ଅଫିସରମାନଙ୍କର ମଧ୍ୟ କୋକୁଆ ଭୟ ସୃଷ୍ଟି ହୋଇଥିଲା।

ଗଡ଼ଜାତ ମାହାଲର ସୁପରିନ୍‌ଟେଣ୍ଡେଣ୍ଟଙ୍କ ନିକଟକୁ ତାଙ୍କ ସହକାରୀ ଅଫିସର କ୍ୟାପଟେନ୍ ଡ୍ରିନ୍ ଡ୍ରେଲରଙ୍କ ଆଠଗଡ଼ର କନ୍ତୋଲ କ୍ୟାମ୍ପରୁ ତା. ୧୧.୧୨.୧୮୪୭ର ଚିଠି :-

ହିନ୍ଦୋଳ ଜିଲ୍ଲାର ଅନେକ ଲୋକ ଭୟ କରୁଛନ୍ତି, ଅନୁଗୋଳ ରାଜା କିଛି ଉତ୍ପାତ କଲେ ତାଙ୍କ ରାଜା ସେମାନଙ୍କୁ ରକ୍ଷା କରିପାରିବେ ନାହିଁ । ମାତ୍ର ମୁଁ ରାସୋଳରେ କ୍ୟାମ୍ପ କଲେ ସେମାନେ ମୋ କ୍ୟାମ୍ପକୁ ପଳାଇ ଆସିବାକୁ ଚେଷ୍ଟାକରିବେ। ମୁଁ ଆଶଙ୍କା କରୁଛି ଏପରି କିଛି ଗୋଳମାଳ ହେଲେ ହିନ୍ଦୋଳ ରାଜା ମଧ୍ୟ ତାଙ୍କ ଗଡ଼ଛାଡ଼ି ଆଶ୍ରୟ ପାଇଁ ମୋ କ୍ୟାମ୍ପକୁ ପଳେଇ ଆସିବେ। ମାତ୍ର ମୋ ସଂଗରେ ବର୍ତ୍ତମାନ ଖୁବ କମ ପଲଟନ ଥିବାରୁ ମୁଁ ଅନୁରୋଧ କରେ ଯେ, ଲୋକମାନଙ୍କ ମଧ୍ୟରେ ଗୋଟାଏ ଦମ୍ଭ ଓ ସାହସ ଆଣିବା ପାଇଁ ଏବଂ ମୋ ଉପରେ ନିର୍ଭର କରାଯାଇପାରେ । ଏ ବିଶ୍ୱାସ ଆଣିବା ପାଇଁ ସଂଗେ ସଂଗେ କଟକରୁ ଆଉ ଦୁଇ କମ୍ପାନୀ ପଲଟନ ମୋ ପାଖକୁ ପଠାଯାଉ।

ଆଉ ମୁଁ ଅନୁଗୋଳ ସହର ନିକଟକୁ ମୋ କ୍ୟାମ୍ପ ଉଠାଇବା ପରେ ମୋ ପାଖରେ ବେଶୀ ପଲଟନ ନାହାନ୍ତି , ଜାଣିଲେ ଅନୁଗୋଳ ରାଜା ମୋତେ ମଧ୍ୟ ଆକ୍ରମଣ କରିବା ଅସମ୍ଭବ ନୁହେଁ, ଏଥିପାଇଁ ମୁଁ ବିଚାରୁଚି ଆଉ ଦୁଇ କଂପାନୀ ପଲଟନ ମୋପାଖକୁ ନଆସିବା ପର୍ଯ୍ୟନ୍ତ ମୁଁ ଭାପୁର କ୍ୟାମ୍ପରୁ ଆଉ ଆଗକୁ ଆଗେଇବି ନାହିଁ।

*ସୁଧାକର ପଟ୍ଟନାୟକ*

*(ପୁସ୍ତକ : ରାଜା ସୋମନାଥ ସିଂହ ଜଗଦେବ)*

## ମହାରାଜା ସୋମନାଥ ସିଂହ ଜଗଦେବ : ଏକ ବିରଳ ବ୍ୟକ୍ତିତ୍ୱ

ପ୍ରଫେସର : ମୀନକେତନ ପୁରୋହିତ

ତା.୧୧.୦୮.୧୮୦୦ର ଏକ ଶୁଭ ମୁହୂର୍ତ୍ତରେ ଅନୁଗୋଳର ଶେଷ ସ୍ୱାଧୀନ ରାଜା ସୋମନାଥ ସିଂହ ଜଗଦେବଙ୍କ ଆବିର୍ଭାବ ହୋଇଥିଲା ବୋଲି ଖଡ଼ିରତ୍ନ ପଞ୍ଜିକାରେ ଲିପିବଦ୍ଧ ହୋଇଛି। ସରକାରୀ ବିବରଣୀ ଅନୁସାରେ ତା.୨.୦୬.୧୮୫୩ରେ ହଜାରିବାଗ ଜେଲର ଏକ ରୁଦ୍ଧଦ୍ୱାର ପ୍ରକୋଷ୍ଠରେ ମହାରାଜାଙ୍କ ତିରୋଧାନ ହୋଇଥିଲା ବୋଲି ଉଲ୍ଲେଖ ରହିଛି, ମହାରାଜା ସୋମନାଥ ଜଣେ ବହୁମୁଖୀ ପ୍ରତିଭା, ବିରଳ ତାଙ୍କ ବ୍ୟକ୍ତିତ୍ୱ । ସେ ଏକାଧାରରେ ଜଣେ କାଳଜୟୀ କବି, ମହାନ୍ ସଂଗୀତଜ୍ଞ, ଦକ୍ଷ ପ୍ରଶାସକ, ଚତୁର କୂଟନୀତିଜ୍ଞ, ସଂସ୍କୃତିର ଉତ୍ସର୍ଗୀକୃତ ରକ୍ଷକ ଓ ପୃଷ୍ଠପୋଷକ, ମର୍ଯ୍ୟାଦାବନ୍ତ ପୁରୁଷ ଏବଂ ସର୍ବୋପରି ଜଣେ ସ୍ଥିତିପ୍ରଜ୍ଞ ସାଧକ ଥିଲେ। ସେ ଯଥାର୍ଥରେ ଅନୁଗୁଳ ଗର୍ବ ଓ ଗୌରବ।

ଡ଼ଃ . ପ୍ରତାପ କୁମାର ସିଂହଙ୍କ ମତରେ ପୁରାତନ ଓ ନୂତନ ପ୍ରସ୍ତର ଯୁଗରେ ଅନୁଗୋଳ ଭୂଖଣ୍ଡରେ ଏକ ପରେ ଏକ ଏହିପରି ଅନେକ ସଭ୍ୟତା ଗଡ଼ି ଉଠିଥିଲା। ସଭ୍ୟତା ଆସେ ଏବଂ ଯାଏ । ମାତ୍ର ସଂସ୍କୃତି ବଞ୍ଚିରହିଥାଏ ।ଅନୁଗୁଳ ଭୂଖଣ୍ଡରେ ଯେ କାଳରେ ଗଡ଼ିଉଠିଥିବା ସମସ୍ତ ସଭ୍ୟତା ଏବଂ ସଭ୍ୟତାର ସୌରଭ ରୂପକ ସଂସ୍କୃତି ଏ କାଳର ସଂସ୍କୃତିର ଆଧାର ଶିଳା। କବି ରାଧାମୋହନ ଗଡ଼ନାୟକ"ଅନୁଗୁଳ, ଅନୁଗୁଳ" ଶୀର୍ଷକ ଦେଶାତ୍ମବୋଧ କବିତାରେ ଉଦାତ୍ତ କଣ୍ଠରେ ଗାଇଛନ୍ତି। "ଅନୁଗୁଳ, ଅନୁଗୁଳ" ଫେରିଚାହାଁ, ଅନୁଗୁଳ।

ଇତିହାସ ତୋର କାଳ ବକ୍ଷରେ ଲେଖା ହୋଇଅଛି ଲାଲ ଅକ୍ଷରେ ଦୁର୍ଲ୍ଲଭ ତାର ତୁଳ,

ଅନୁଗୁଳ, ଅନୁଗୁଳ।

ସେ ଇତିହାସ କେଉଁ କାଳର ଇତିହାସ ହୋଇପାରେ? ସୋମନାଥ ପୂର୍ବବର୍ତ୍ତୀ ଇତିହାସ ତ ଲେଖା ହୋଇନାହିଁ। ତେଣୁ ଅନୁଗୁଳ ମାଟିର ମହାକବି ରାଧାମୋହନ ଗଡ଼ନାୟକ ମହାରାଜା ସୋମନାଥ ଜଗଦେବଙ୍କ ରାଜତ୍ୱ କାଳର ଅର୍ଥାତ ୧୮୧୯ରୁ ୧୮୪୮ର ଇତିହାସକୁ ଅନୁଗୋଳର ଗୌରବୋଜ୍ଜଳ ଇତିହାସ ରୂପେ ପ୍ରତିପାଦନ କରିଥିବେ ବୋଲି ମୋର ଦୃଢ଼ ବିଶ୍ୱାସ। ଉନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ବିଶେଷତଃ ମହାରାଜା ସୋମନାଥଙ୍କ ରାଜତ୍ୱକାଳରେ ଅନୁଗୁଳ ଭୂଖଣ୍ଡରେ ସାଂସ୍କୃତିକ ବିକାଶର ସୂତ୍ରପାତ ହୋଇଥିଲା । ଏହି କାଳକୁ ଅନୁଗୁଳ ଇତିହାସର ସୁବର୍ଣ୍ଣଯୁଗ କହିଲେ ସତ୍ୟର ଅପଳାପ ହେବନାହିଁ। ମୂଲ୍ୟାୟନ କରୁନାହିଁ । ଏହି ସନ୍ଦର୍ଭରେ ସେ ଏକ ବିରଳ ବ୍ୟକ୍ତିତ୍ୱ। ବହୁମୁଖୀ ତାଙ୍କର ପ୍ରତିଭା। ପ୍ରତିଭାର ଆକଳନ କରିବା ଏବଂ ବ୍ୟକ୍ତିତ୍ୱର ମୂଲ୍ୟାୟନ କରିବା ଧୃଷ୍ଟତା ହୋଇପାରେ। ଏହା ଦିବଂଗତ ମହାରାଜାଙ୍କ ଏକ Portrait (Portrait of a poet -cum-politician) ଦୁଇଶହ ବର୍ଷ ବିତି ଯାଇଛି। ତଥାପି ସୋମନାଥଙ୍କ ଐତିହାସିକ ତଥ୍ୟ ଭିତ୍ତିକ ସଂପୂର୍ଣ୍ଣ ପ୍ରାମାଣିକ ଜୀବନଟିଏ ଲେଖାହୋଇନାହିଁ। ସୁଧାକର ପଟ୍ଟନାୟକ, ଦାମୋଦର ପଟ୍ଟନାୟକ, ଗୋବିନ୍ଦ ରାୟଗୁରୁ , ବିଜୟ ମହାପାତ୍ର , ବନମାଳୀ ବେହେରା, ଅକ୍ଷୟ କୁମାର ପଟ୍ଟନାୟକ, ଡ଼ାକ୍ତର ବିପିନି ବିହାରୀ ସାହୁ, ପ୍ରଫେସର ମୀନକେତନ ପୁରୋହିତ, ଡ଼କ୍ଟର ହରିହର କାନୁନଗୋ, ଶ୍ରୀ ଅଧ୍ୟାପକ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ଏବଂ ଶ୍ରୀ ଶତ୍ରୁଘ୍ନ ମିଶ୍ର ଆଦି ଯେତେ ଲେଖକ ସୋମନାଥଙ୍କ ଜୀବନ ଚରିତ୍ର , ଜୀବନାଦର୍ଶରେ ଆଲୋକପାତ କରିଛନ୍ତି , ସେଥିରେ ବହୁତ ତ୍ରୁଟି ବିଚ୍ୟୁତ ଥିବାର ଆଶଙ୍କା କରାଯାଏ । ସେମାନଙ୍କ ଉଦ୍ୟମ ପ୍ରଶଂସନୀୟ। ମାତ୍ର ସବୁ ତଥ୍ୟ ଗ୍ରହଣୀୟ ନୁହେଁ। କେବଳ ଡ଼କ୍ଟର ହରିଶ୍ଚନ୍ଦ୍ର ପଣ୍ଡାଙ୍କ ଗବେଷଣାଲବ୍ଧ ତଥ୍ୟ ଭିତ୍ତିକ ସନ୍ଦର୍ଭ ହିଁ ଏକମାତ୍ର ନିର୍ଭର ଯୋଗ୍ୟ ଇତିହାସ। ଅନ୍ୟସବୁ ପ୍ରବନ୍ଧ କିମ୍ବଦନ୍ତୀ ଆଧାରିତ। ମାତ୍ର କିମ୍ବଦନ୍ତୀ ଭିତରେ ମଧ୍ୟ ଇତିହାସ ଲୁଚି ରହିଥାଏ। ତେଣୁ ସେଗୁଡ଼ିକୁ ହେୟଜ୍ଞାନ କରିବା ଉଚିତ ନୁହେଁ। ସୋମନାଥଙ୍କ ପିତାଙ୍କ ନାମ ଗୋପୀନାଥ ସିଂହ, ଏବଂ ମାତାଙ୍କନାମ ସୁଲୋଚନା ଦେବୀ। ସୁଲୋଚନା ଦେବୀ ନିମାପଡ଼ାର ଜମିଦାର ଅଭିରାମ ରାଏତ୍ ସିଂହଙ୍କ ଭଗିନୀ । ଅଷ୍ଟାଦଶ ଶତାବ୍ଦୀର ଶେଷ ପାଦରେ ଏବଂ ଉନବିଂଶ ଶତାବ୍ଦୀର ପ୍ରଥମ ପାଦରେ ଅନୁଗୋଳ ରାଜପ୍ରାସାଦରେ ବିଭିଷୀକା ପୂର୍ଣ୍ଣ ଗୃହଯୁଦ୍ଧ ଲାଗିରହିଥିଲା । ଜୟସିଂହ ଅନୁଗୋଳ ରାଜସିଂହାସନ ମଣ୍ଡନ କରୁଥିଲେ। ପୃଥ୍ୱୀ ସିଂହ ତାଙ୍କୁ ହତ୍ୟାକରି ରାଜ୍ୟ ଅଧିକାର କରିନେଲେ। ସୌଭାଗ୍ୟବଶତଃ ଗୋପୀନାଥ ସିଂ ଏବଂ ସୁଲୋଚନା ସିଂହଙ୍କର ଶେଷ ପୁତ୍ର ସୋମନାଥ ଆତତାୟୀ ଗୁଳିରୁ ରକ୍ଷା ପାଇଗଲେ। ଜୟ ସିଂହଙ୍କ ରାଣୀ ଦାସୀ ହାତରେ ସୋମନାଥଙ୍କୁ ଭୁବନ ମଙ୍ଗରାଜଙ୍କ ବାସଭବନକୁ ପଠାଇଦେଲେ। ଭୁବନ ମଙ୍ଗରାଜ ମାତା ସୁଲୋଚନା ଓ ପୁତ୍ର ସୋମନାଥଙ୍କୁ ମାତୁଳାଳୟ ନିମାପଡ଼ାକୁ ପଠାଇଦେଲେ। (କୃଷ୍ଣଚନ୍ଦ୍ରଗଡ଼)

ସୋମନାଥଙ୍କ ଶୈଶବ ଓ କୈଶୋର ନିମାପଡ଼ାରେ ଅତିବାହିତ ହୋଇଥିଲା। ପିତାମହ ଭଗବାନ ରଏତ୍ ସିଂହ ସୋମନାଥଙ୍କର ବାଲ୍ୟ ଶିକ୍ଷାର ବ୍ୟବସ୍ଥା କରିଥିଲେ। ସୋମନାଥ ଜଣେ ମେଧାବୀ ଛାତ୍ର ଥିଲେ। ମାତ୍ର ୯ ବର୍ଷ ବୟସରେ ପ୍ରାଚୀ ଓଡ଼ିଆ କବିତା

ଏବଂ ଓଡ଼ିଆ ବ୍ୟାକରଣରେ ପାରଦର୍ଶିତା ଲାଭ କରିଥିଲେ। ଅବଧାନଙ୍କ ସୁପାରିଶ କ୍ରମେ ଅଭିରାମ ସିଂହ ତାଙ୍କୁ ପୁରୀକୁ ନେଇଯାଇ ଜଣେ ସଂସ୍କୃତ ଅଧ୍ୟାପକଙ୍କ ତତ୍ତ୍ୱାବଧାନରେ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟ ଅଧ୍ୟୟନର ବ୍ୟବସ୍ଥା କରିଥିଲେ। ଏହି ସମୟରେ ଅର୍ଥାତ କୈଶୋରରେ ସୋମନାଥଙ୍କ କବିତ୍ୱର ସ୍ଫୁରଣ ହୋଇଥିଲା। ମହାରାଜା ସୋମନାଥ କେତେ କବିତା ଲେଖିଥିଲେ ତାହା କେହି ବ ସଠିକ କହି ପାରି ନାହାନ୍ତି, ଦାମୋଦର ପଟ୍ଟନାୟକ ସୋମନାଥଙ୍କ ରଚିତ ୨୦୦ଟି କବିତାକୁ "ସଂଗୀତ ସାଗର" ସଂକଳନରେ ସ୍ଥାନୀତ କରିଛନ୍ତି । (୧୯୦୩) । ପ୍ରାଚୀ ସାହିତ୍ୟ ସମିତି ସୋମନାଥଙ୍କ ଦୁଇଟି ଚଉତିଶା , ତେରଟି ମାଳିଶ୍ରୀ, ନବେଟି କୃଷ୍ଣଗୀତ, ଏବଂ ତେୟାଳିଶଟି ସୁନ୍ଦର ରସାଶ୍ରିତ କବିତାକୁ ସନ୍ନିବେଶିତ କରିଛନ୍ତି। ପ୍ରଫେସର କାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) କବି ସୋମନାଥଙ୍କ ମାତୁଳାଳୟ ନିମାପଡ଼ା ଜମିଦାରଙ୍କ ବାସଭବନରୁ ବହୁ କବିତା ସଂଗ୍ରହ କରି ଏକ ସଂକଳନରେ ପ୍ରକାଶିତ କରିଛନ୍ତି। ସୋମନାଥଙ୍କ ଆହୁରି ବହୁ ଅପ୍ରକାଶିତ କାବ୍ୟ କବିତା, ଚଉତିଶା, ଗିତୀକା , ଲୋକଲୋଚନର ଅଗୋଚରରେ ରହିଯାଇଛି। ବିସ୍ମୃତିର ଅତଳ ଗର୍ଭରେ ଲୀନ ହୋଇଯାଇଛି । ସେଗୁଡ଼ିକ ବିସ୍ମୃତି ଗର୍ଭରୁ ଉଦ୍ଧାର କରିବାର ଆଉ ଉପାୟ ନାହିଁ।

ରାଜା ନିଜେ ଜଣେ ସଂଗୀତଜ୍ଞ ଥିଲେ । ବାଲ୍ୟକାଳରେ ମାତୁଳାଳୟରେ ଅବସ୍ଥାନ କାଳରେ ସୋମନାଥ କଳଗାନା (ଗ୍ରାମଫୋନ୍) ଝରି ଆସୁଥିବା ମଧୁର ସୁର ଝଙ୍କାର ଶୁଣି ଆତ୍ମହରା ହୋଇଥିଲେ। ପିତାମହ ତାଙ୍କର ସଂଗୀତ ସ୍ପୃହାର ସନ୍ଧାନ ପାଇ ଜଣେ ସଂଗୀତ ଶିକ୍ଷକ ନିଯୁକ୍ତି କରିଥିଲେ। ପରିବାରର ଅନ୍ୟ ଶିଶୁ ମାନଙ୍କ ସହ ସ୍ୱର ସାଧନ କରୁଥିଲେ। ବାଦ୍ୟ ଯନ୍ତ୍ର ସହକାରେ ଲଘୁସଂଗୀତ, ସୁଗମ ସଂଗୀତ ଏବଂ ଶାସ୍ତ୍ରୀୟ ସଂଗୀତ ଗାନ କରୁଥିଲେ । ଗୋବିନ୍ଦ ରାୟଗୁରୁଙ୍କ ରଚିତ କୃଷ୍ଣଚନ୍ଦ୍ର କାବ୍ୟରେ ସୋମନାଥଙ୍କ ନବରାଣୀର ନାମଲେଖ ରହିଛି ? ସେମାନେ ତାଳଚେର, ହିନ୍ଦୋଳ, ଆଠଗଡ଼, ରେଢ଼ାଖୋଲ, ବୌଦ, ଦଶପଲ୍ଲା, ତିଗିରିଆ , ବଡ଼ମ୍ବା , ନରସିଂହପୁରର ରାଜକନ୍ୟା । ରାଣୀମାନେ ମଧ୍ୟ ସଂଗୀତଶିକ୍ଷା କରୁଥିଲେ । ପ୍ରତି ସଞ୍ଜସକାଳେ ଦ୍ୱୈତକଣ୍ଠରେ ହେଉକି ସମବେତ କଣ୍ଠରେ ହେଉ ବାଦ୍ୟ ଯନ୍ତ୍ର ସହକାରେ ମହାରାଜାଙ୍କ ରଚିତ ଗୀତଗୁଡ଼ିକୁ ଗାନ କରୁଥିଲେ। ରାଜାନିଜେ ସୁର ସଂଯୋଜନା କରୁଥିଲେ, ନିର୍ଦ୍ଦେଶନା ଦେଉଥିଲେ। ରାଜା ନିଜେ ସୁରସଂଯୋଜନା କରୁଥିଲେ। ନିର୍ଦ୍ଦେଶନା ଦେଉଥିଲେ । ରାଣୀମାନେ ବେହେଲା, ବୀଣା, ହାରମୋନିଅମ୍ ଆଦି ବାଦ୍ୟଯନ୍ତ୍ର ମଧ୍ୟ ବ୍ୟବହାର କରୁଥିଲେ। ସଂଗୀତ ପ୍ରେମୀ ରାଜା ବେଳେବେଳେ ରାଜଦରବାରରେ ସଂଗୀତ ଆସରର ଆୟୋଜନ କରୁଥିଲେ।

ଡ଼କ୍ଟର ଦଧିବାମନ ପ୍ରଧାନ ଅନୁଗୋଳରେ ପାଲାସଂସ୍କୃତି ବିଷୟରେ ଗବେଷଣା କରି ଲେଖିଛନ୍ତି "ସୋମନାଥଙ୍କ ଆବିର୍ଭାବ ପୂର୍ବରୁ ମଧ୍ୟ ଅନୁଗୋଳ ଭୂଖଣ୍ଡରେ ପାଲା ପରିବେଶିତ ହେଉଥିଲା' ମାତ୍ର ଉପକୂଳ ଅଞ୍ଚଳର ପାଲା ଗାୟକ ମାନେ ପାଲା ପରିବେଶଣ କରୁଥିଲେ। ମହାରାଜା ସୋମନାଥଙ୍କ ରାଜତ୍ୱ କାଳରେ ଅର୍ଥାତ ଉନ୍ନବିଂଶ ଶତାବ୍ଦୀର ମଧ୍ୟଭାଗରେ ଅନୁଗୋଳର ପାଲାଗାୟକ ମାନେ ପାଲା ପରିବେଶଣ କରିବାକୁ ଆରମ୍ଭ କଲେ । ମହାରାଜା ସୋମନାଥ ସିଂହଙ୍କ ରାଜଦରବାରର

ନବରତ୍ନ ପଣ୍ଡିତ ଙ୍କ ମଧ୍ୟରୁ ଜଣେ ପାଲାଗାୟକ ଥିଲେ। ସମକାଳରେ ଅନୁଗୁଳ ଜିଲ୍ଲାରେ ଦଣ୍ଡନୃତ୍ୟ ମଧ୍ୟ ଲୋକପ୍ରିୟ ଥିଲା । ବୌଦ୍ଧ, ସୋନପୁର ଦଣ୍ଡନୃତ୍ୟର ଉଦ୍ଭବସ୍ଥଳ । ଊନବିଂଶ ଶତାବ୍ଦୀର ଆରମ୍ଭରେ ବୌଦ ଅଞ୍ଚଳରୁ ଉଭୟ ଧର୍ମୀୟ ଦଣ୍ଡ, (Ritualistic Dance) ଏବଂ ସାଂସ୍କୃତିକ ଦଣ୍ଡ( Cultural Dance Form) ଅନୁଗୋଳକୁ ସଂପ୍ରସାରିତ ହୋଇଥିଲା। ଅଶ୍ଳୀଳତାପୂର୍ଣ୍ଣ ବଣ୍ଡିନୃତ୍ୟକୁ ବହିଷ୍କାର କରିଦେଇ ସାଂସ୍କୃତିକ ଦଣ୍ଡ ଅନୁଗୋଳ ଜିଲ୍ଲାର ନିଜସ୍ୱ ଲୋକନୃତ୍ୟରେ ରୂପାନ୍ତରିତ ହୋଇଯାଇଛି। ଓଡ଼ିଶାର ଅନ୍ୟଅଞ୍ଚଳରେ ଦଣ୍ଡନୃତ୍ୟ ମୁମୁର୍ଷୁ ଅବସ୍ଥାରେ ବଞ୍ଚିରହି ମୃତ୍ୟୁ ସହ ସଂଘର୍ଷ କରୁଛି। ମାତ୍ର ଅନୁଗୁଳରେ ଏହା ସରସ, ସୁନ୍ଦର, ଜୀବନ୍ତ ଓ ପ୍ରାଣବନ୍ତ ହୋଇ ଜନତାର ମନୋରଂଜନ ଓ ପ୍ରାଣସ୍ପନ୍ଦନ କରିପାରିଛି। ମହାରାଜାଙ୍କ ପାଇକ ମାନେ କ୍ଳାନ୍ତି ଅପନୋଦନ ଏବଂ ଅବସର ବିନୋଦନ ପାଇଁ ସମରନୃତ୍ୟ କରୁ ଥିଲେ। ତାହା ଏବେ ପାଇକ ନୃତ୍ୟ ରୂପେ ପରିଚିତ। ଏକ ସମୟରେ ଅନୁଗୋଳରେ ଗାଁ ଗାଁରେ ପାଇକ ଆଖଡ଼ା ଥିଲା। ଏବେ ମଧ୍ୟ ବହୁ ଗ୍ରାମରେ ପାଇକ ଆଖଡ଼ା ଅଛି। ତାଳଚେର ଗୋଟିଏ ମହିଳା ପାଇକ ଆଖଡ଼ା ଆତ୍ମପ୍ରକାଶ କରିଛି। ଏହା ଓଡ଼ିଶାର ଏକମାତ୍ର ମହିଳା ପାଇକ ନୃତ୍ୟ ଅନୁଷ୍ଠାନ (Only Institution of its kind in Orissa) ମହାରାଜା ସୋମନାଥ ସିଂହ ଗଞ୍ଜାମରୁ ଗୋଟିପୁଅ ନୃତ୍ୟ ଅଣାଇ ରାଜ ଦରବାରରେ ପ୍ରଦର୍ଶନ କରାଉଥିଲେ। ସେହି ଗୋଟିପୁଅ ନୃତ୍ୟ ବିବର୍ତ୍ତନର ଧାରାରେ ଏବଂ ଉତ୍ତରୋତ୍ତର ପ୍ରକ୍ରିୟାରେ ଏବେ ଓଡ଼ିଶୀ ନୃତ୍ୟରେ ରୂପାନ୍ତରିତ ହୋଇ ଶାସ୍ତ୍ରୀୟ ନୃତ୍ୟର ମାନ୍ୟତା ଓ ମର୍ଯ୍ୟାଦାପାଇଛି। ସାରା ବିଶ୍ୱରେ ଆଦୃତ ହୋଇଛି। ମହାରାଜା ସୋମନାଥ ଏହି ନୃତ୍ୟର ଉଜ୍ଜ୍ୱଳ ଭବିଷ୍ୟତର ଆଭାସ ପାଇଥିଲେ । ସେଥିପାଇଁ ସେ ଏହି ନୃତ୍ୟର ପୃଷ୍ଠପୋଷକତା କରିଥିଲେ।

ମହାରାଜା ସୋମନାଥ ବୃତ୍ତିରେ ସିନା ରାଜା, ପ୍ରବୃତ୍ତିରେ କବି ଥିଲେ। ଅନୁଗୋଳ ରାଜସଭାରେ ନବରତ୍ନ କବିଙ୍କୁ ସସମ୍ମାନେ ବସାଇଥିଲେ । ସେମାନେ ସମସ୍ତେ ଓଡ଼ିଆ, ହିନ୍ଦୀ ଓ ସଂସ୍କୃତ ଭାଷାରେ କବିତା ରଚନା କରୁଥିଲେ। ରାଜସଭାରେ ଶ୍ଳୋକାର୍ଥ କରୁଥିଲେ। ସ୍ୱରଚିତ କବିତା ପାଠ କରୁଥିଲେ। ଇଂ. ବିଜୟ ମହାପାତ୍ର ଲେଖିଛନ୍ତି, କବି ଚନ୍ଦ୍ରଲାଟ ନୃସିଂହ ରାୟଗୁରୁଙ୍କ ସହିତ ଅନ୍ୟ ଯେଉଁ ଆଠଜଣ କବି ଓ କୋବିଦ ନବରତ୍ନ ପଣ୍ଡିତ ଭାବେ ସମ୍ମାନିତ ହୋଇଥିଲେ, ସେମାନେ ହେଲେ , ନୀଳାମ୍ବର ପୁରୋହିତ, ଜଗନ୍ନାଥ ପୂଜାପଣ୍ଡା, ଚନ୍ଦ୍ରଶେଖର, ପରମେଶ୍ୱର, ଜଗବନ୍ଧୁ, ଦୀନବନ୍ଧୁ , ଗଣେଶ୍ୱର ବ୍ରହ୍ମା, ମହାଦେବ ବ୍ରହ୍ମା। ନୃସିଂହ ରାୟଗୁରୁ, ପ୍ରେମ ତରଙ୍ଗିଣୀ , ହେମଲତା, ପୁନିଆଁ ଚମ୍ପୂ, ଜୀବନ ଲୀଳାମୃତ ଆଦି ଅସଂଖ୍ୟ ଗ୍ରନ୍ଥ ରଚନା କରିଥିଲେ। କବି ରାଧାମୋହନ ଗଡ଼ନାୟକଙ୍କ ମଧ୍ୟରେ "ବୁଢ଼ାପଙ୍କ ଯୁଦ୍ଧ" ନୃସିଂହ ରାୟଗୁରୁଙ୍କ ଶ୍ରେଷ୍ଠ କାବ୍ୟ । ଏହା ଓଡ଼ିଆ ଭାଷାରେ ଅଦ୍ୱିତୀୟ ସମର କାବ୍ୟ। ଦୀନବନ୍ଧୁ ପାଗଳଙ୍କ ଶ୍ରୀକୃଷ୍ଣ ଚରିତାମୃତ ଏକ ଅନବଦ୍ୟ ଓଡ଼ିଆ କାବ୍ୟ। ନୀଳାମ୍ବର ପୁରୋହିତ ସଂସ୍କୃତରେ କାବ୍ୟ ରଚନା କରୁଥିଲେ। ମହାରାଜା ସୋମନାଥ ସିଂହ ନିଜେ ବହୁ କାବ୍ୟକବିତା ରଚନା କରିଥିଲେ। ସୋମନାଥ ଗୀତାବଳୀ ସଂକଳନରେ କବିତା ଗୁଡ଼ିକ ସନ୍ନିବେଶିତ ହୋଇଅଛି। ଡକ୍ଟର ମଞ୍ଜୁଲତା ମହାପାତ୍ର ତାଙ୍କର ଗୋଟିଏ ପ୍ରବନ୍ଧରେ ସୋମନାଥ ପୁର ଗ୍ରାମର

ନାମକରଣ ଏବଂ ଇତିବୃତ୍ତ ବର୍ଣ୍ଣନା କରିବାକୁ ଯାଇ କହିଛନ୍ତି " ମହାରାଜା ସୋମନାଥ ସିଂହ ଅନୁଗୋଳ ଭୂଖଣ୍ଡରେ ଶିକ୍ଷାର ବିକାଶ ପାଇଁ ଗାଁ ଗାଁରେ ଚାଟଶାଳୀ ସ୍ଥାପନ କରିଥିଲେ, ଭଗ୍ନ ମନ୍ଦିର ଗୁଡ଼ିକୁ ମରାମତି କରିଥିଲେ , ପୁରାତନ ପୁଷ୍କରିଣୀ ଗୁଡ଼ିକର ସଂସ୍କାର କରିଥିଲେ, ପୁରୀ ଶାସନ ଅଞ୍ଚଳରୁ ବ୍ରାହ୍ମଣ ମାନଙ୍କୁ ନିମନ୍ତ୍ରଣ କରି ଆଣିଥିଲେ , ସେମାନଙ୍କୁ ଜମିବାଡ଼ି ଖଞ୍ଜି ଥିଲେ । ବ୍ରାହ୍ମଣ ମାନେ ଚାଟଶାଳୀରେ ଅବଧାନ ହେଲେ ଓ ମନ୍ଦିରର ପୂଜକ ହେଲେ । ଏସବୁ ବିଷୟରୁ ପ୍ରତୀୟମାନ ହୁଏ ଯେ, ସୋମନାଥଙ୍କ ରାଜତ୍ୱ କାଳରେ ଅନୁଗୋଳ ସାଂସ୍କୃତିକ ବିକାଶର ସୂତ୍ରପାତ ହୋଇଥିଲା । ମହାରାଜା ସୋମନାଥ ସିଂହ ସାଂସ୍କୃତିକ ବିକାଶର କର୍ଣ୍ଣଧାର ଥିଲେ । ମହାରାଜା ସୋମନାଥ ସିଂହ ୧୪ ବର୍ଷ ବୟସରେ ଏକ ଯୁଦ୍ଧ ବିଧ୍ୱସ୍ତ ଏବଂ ବାହ୍ୟଶତ୍ରୁ ପରିବେଷ୍ଟିତ କ୍ଷୁଦ୍ର ରାଜ୍ୟରେ ଅଭିଷିକ୍ତ ହୋଇଥିଲେ । ନାବାଳକ ଥିଲେ । ତେଣୁ ପାଞ୍ଚ ବର୍ଷ ପରେ ୧୮୧୯ସାଲରେ ଶାସନ ଦାୟିତ୍ୱ ଗ୍ରହଣ କଲେ । ନିଜ ରାଜ୍ୟରେ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ପଡ଼ୋଶୀ ରାଜାମାନଙ୍କ ସହ ଯୁଦ୍ଧକଲେ । ସେ ଯୁଦ୍ଧଖୋର ନଥିଲେ । ଯୁଦ୍ଧ ପାଇଁ ଯୁଦ୍ଧ କରୁନଥିଲେ । ବରଂ ଶାନ୍ତି ପାଇଁ ଯୁଦ୍ଧକରୁଥିଲେ । ଯୁଦ୍ଧରେ ଶାମ, ଦାନ, ଦଣ୍ଡ, ଭେଦ ନୀତି ପ୍ରୟୋଗ କରି ଜୟଯୁକ୍ତ ହୋଇଥିଲେ । ଉଚ୍ଚାଭିଳାଷୀ ଥିଲେ । ମାତ୍ର ରାଜ ଚକ୍ରବର୍ତ୍ତୀ ସମ୍ରାଟ ହେବାକୁ ଚାହୁଁ ନଥିଲେ । ସେ ସ୍ୱାଧୀନ ଚେତା ଥିଲେ । ଭାରତ ମାଟିରେ ବିଦେଶୀ ଶାସନକୁ ପସନ୍ଦ କରୁନଥିଲେ । ଇଂରେଜ ସରକାରଙ୍କ ଆଜ୍ଞାକୁ ଅବଜ୍ଞା କରି ସରକାରଙ୍କ ଚକ୍ଷୁଶୂଳ ହେଲେ । ପଡ଼ୋଶୀ ରାଜାମାନେ ତାଙ୍କ ସହିତ ସହଯୋଗ କରୁଥିଲେ । ପଶ୍ଚିମ ଓଡ଼ିଶାର ୧୮ଟି ଗଡ଼ଜାତ ମିଶି ଯେପରି ରାଜ୍ୟ ଗୋଷ୍ଠୀ (Confederate State) ଗଠନ କରିଥିଲେ । ମହାରାଜା ସୋମନାଥ ସିଂହ ମଧ୍ୟଓଡ଼ିଶାର କେନ୍ଦ୍ରରେ ସେହିପରି ଏକ ଗଡ଼ଜାତ ରାଜ୍ୟ ଗୋଷ୍ଠୀ ଗଠନ କରିପାରିଥାନ୍ତେ, ନିଜେ ସେହି ରାଜ୍ୟ ଗୋଷ୍ଠୀର ଅଧିପତି (Over Lord) ହୋଇଥାନ୍ତେ । ପାରସ୍ପରିକ ସହଯୋଗରେ ସହଯୋଗୀ ଗଡ଼ଜାତର ପ୍ରଜାମାନଙ୍କ ସର୍ବବିଧ ବିକାଶ ସମ୍ଭବ ହୋଇପାରିଥାନ୍ତା । ମାତ୍ର ପଡ଼ୋଶୀ ରାଜାମାନେ ସହଯୋଗ କରିବା ପରିବର୍ତ୍ତେ ବିରୋଧ କଲେ । ସୋମନାଥଙ୍କୁ ଏକାକୀ ସାମ୍ରାଜ୍ୟବାଦୀ ସରକାରଙ୍କ ବିରୋଧରେ ସଂଗ୍ରାମ କରିବାକୁ ପଡ଼ିଲା । ନାନାସାହେବ ଓ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଇଙ୍କର ନିକର ସୈନ୍ୟ ଥିଲେ । ସୋମନାଥଙ୍କ ସୈନ୍ୟବାହିନୀ ସ୍ୱଳ୍ପ ଥିଲେ । ବିଶାଳ ସ୍ଥାୟୀ ସୈନ୍ୟବାହିନୀ ଗଠନକରିବାପାଇଁ ସମ୍ବଳ ନଥିଲା । ତଥାପି ଦୀର୍ଘ ୧୮ବର୍ଷ କାଳ ବ୍ରିଟିଶ ସାମ୍ରାଜ୍ୟର ବିରୁଦ୍ଧରେ ପ୍ରତ୍ୟକ୍ଷ ନହେଲେ ବି ପରୋକ୍ଷଭାବେ ଯୁଦ୍ଧ କରିଥିଲେ । ଅଦ୍ଭୁତ ତାଙ୍କର ରଣ କୌଶଳ । ରୋମାଞ୍ଚକର ତାଙ୍କର ବୀରତ୍ୱର କାହାଣୀ । ରାଜା ବନ୍ଦୀ ହେଲେ ସିନା କ୍ଷମା ଭିକ୍ଷା କଲେ ନାହିଁ; ୦୨.୦୭.୧୮୫୩ରେ ଯୁଦ୍ଧ କ୍ଷେତ୍ରରେ ନହେଲେ ବି ଶିଳାଗୃହର ଅନ୍ଧକାର ଭିତରେ ବୀରଗତି ପ୍ରାପ୍ତ ହେଲେ । ମରି ମଧ୍ୟ ଅମର ହୋଇଗଲେ । ସେହି ବିରଳ ବ୍ୟକ୍ତିତ୍ୱର ପବିତ୍ର ଜନ୍ମତିଥିରେ ଆଜି ସୁଶ୍ରଦ୍ଧାର ସୁମନ ଅର୍ପଣ କରୁଛି ।





## ସର୍ବଶିକ୍ଷା ଅଭିଯାନ ଶହେ ବର୍ଷ ତଳର ।

ଈଶ୍ୱର ଚନ୍ଦ୍ର ପ୍ରଧାନ, ଟାକୁଣ୍ଡାପାଳ

ଆଜିର ସାକ୍ଷରତା ଯୋଜନା, ସର୍ବଶିକ୍ଷା ଅଭିଯାନ ଆଦି ଦଶ ପନ୍ଦର ବର୍ଷ ତଳର ସରକାରୀ ପରିକଳ୍ପନା । ମାତ୍ର ଆଜକୁ ଶହେ ବର୍ଷ ତଳେ କେଉଁ ଅଖ୍ୟାତ ଗ୍ରାମର ଜଣେ ପ୍ରାଥମିକ ଶିକ୍ଷକ ନିଜସ୍ୱ ପରି କଳ୍ପନାରେ, ନିଜସ୍ୱ ବ୍ୟୟରେ ଆରମ୍ଭ କରିଥିଲେ ସର୍ବଶିକ୍ଷା ଅଭିଯାନ। କିପରି ?

**(କ) ସ୍କୁଲରେ ମଧ୍ୟାହ୍ନ ଭୋଜନ :**

ମଇଁଷିଗୁଡ଼ିକୁ ସିଙ୍ଗଡ଼ା ନଦୀ ପଠାରେ ଛାଡ଼ିଦେଇ ମୁଁ ବରପଦା ସ୍କୁଲକୁ ଗଲି। ମାଷ୍ଟ୍ରେ ଆଦର ଗୌରବ କଲେ। ପଗ୍ରିଲେ, "କୃତାର୍ଥ ବାବୁ ! ଭାତ ଆଣିଥିବ ତ ? ଦେଲ ମୁଠେ; ବଡ଼ କ୍ଷୁଧା।" ଆଶ୍ଚର୍ଯ୍ୟରେ ମୁଁ ନ ଯକୌ ନସ୍ତଯୌ। ମାଷ୍ଟ୍ରେ କେବଳ ସକାଳେ ଦକତେ ଓ ସନ୍ଧ୍ୟାରେ ଦକତେ ଖାଆନ୍ତି। ଏବେ କଣ ମୁଁ ଶୁଣୁଛି। ଭାତ ଡେକିଚିଟି ତାଙ୍କ ସାମନାରେ ଥୋଇଦେଲି। ସେ ମାତ୍ର ଦି ମୁଠା ଭାତ ନେଲେ। ରୋଷେଇ ଘରୁ ଡେକିଚିଟିଏ ଆଣିଲେ। ସେଥିରେ ମୁଠେ ଦି ମୁଠା ପଖାଳ-ତୋରାଣି ଥାଏ। ଏ ଭାତ ସେଥିରେ ମିଶେଇ ପାଞ୍ଚ ଛଅଟି ତାଟିଆରେ ବାଢ଼ିଲେ। ଗୁଡ଼ିଏ ଛୋଟ ଶିଶୁଙ୍କୁ ଖୁଏଇ ଆଞ୍ଚେଇ ଦେଲେ। କହିଲେ,

" କୃତାର୍ଥ ବାବୁ ! ଏଇ ଶିଶୁମାନଙ୍କର ବାପ ମା ଅନ୍ଧାରରୁ ଗଲେ ବଣ ବିଲକୁ ପେଟ ପାଟଣା ପାଇଁ। ଏମାନଙ୍କୁ ଜଗିଲେ ଉପର ଭାଇ ଭଉଣୀ। ପାଠ ପଢ଼ିବ କିଏ ? ଶିକ୍ଷା ପ୍ରସାର ହେବ କିପରି ? ଘର ଘର ବୁଲି ଏ ଛୁଆଗୁଡ଼ିକୁ କୋଳେଇ କାଖେଇ ଆଣିବାରୁ ଉପର ଭାଇ ଭଉଣୀଗୁଡ଼ିକ ସ୍କୁଲକୁ ଆସିଲେ। ପ୍ରତିଦିନ ଏଇଠି ଦିଟା ଫୁଟେଇ ଦିଏ। ଦିନେ ଦିନେ ଘରୁ ବେଲାଏ ଭାତ ଧରି ଆସେ (ବଣ ଜଙ୍ଗଲ ନଇ ନାଳ ଭରା ୩ ମାଇଲ୍ ଦୂର କୋଶଳା ଗାଁରୁ ଚାଲି ଚାଲି)। ଆଜି ମୁଁ ବଡ଼ କ୍ଲାନ୍ତ। ବ୍ୟତିକ୍ରମ ଘଟିଲା। ତମକୁ ଅଧାଖିଆ ରଖିଲି।"

କଣ ମୁଁ ଶୁଣୁଛି, କଣ ଦେଖୁଛି ? ଜୀର୍ଣ୍ଣ ଶୀର୍ଣ୍ଣ ଗର୍ଗଣ ଥର ଥର ଏ ବୃଦ୍ଧ ମୋର ମଧ୍ୟ ବାଲ୍ୟ ଗୁରୁ, କଲ୍ୟାଣ ସାହୁ, ବଡ଼ ମାଷ୍ଟ୍ରେ, କୋଟି ପ୍ରଣାମ।

ଅନୁଭୂତି -
କୃତାର୍ଥ ପ୍ରଧାନ, କୋଶଳା, ଅନୁଗୁଳ

(ଖ) ଶୀତ ଦିନର ସଂଧ୍ୟା, ଗଦାଏ ନିଆଁ ଜଳୁଚି, ନିଆଁକୁ ଘେରି ଛାତ୍ର ଛାତ୍ରୀ - ସାଇର ଝିଅ ବୋହୂ, ହଳିଆ ମୂଲିଆ। ନିଜ ହାତରୁ ଲଣ୍ଠନ, ଡିବି, ସ୍ଲେଟ ପେନ୍ସିଲ୍, ବହି ପତ୍ର ଦେଇ ପାଠ ପଢ଼ାଉଛନ୍ତି ବୃଦ୍ଧ ହେଡ ପଣ୍ଡିତ କଲ୍ୟାଣ ସାହୁ। ବର୍ଷ ସାରା ଗ୍ଲେ ଏ ବିଦ୍ୟାଳୟ। ଦ୍ୱିତୀୟ ମହାଯୁଦ୍ଧ ବେଳେ କିରାସିନିର ଉତ୍କଟ ଅଭାବ। ନିଜ ଘରୁ ଜଡ଼ା ତେଲ, ରାଶି ତେଲ ବତୀରେ ମଧ୍ୟ ଗ୍ଲେ ଏ ବିଦ୍ୟାଳୟ।

ଅନୁଭୂତି
ସ୍କୁଲ ଏସ୍.ଆଇ. ଶ୍ରୀ ବିଶ୍ୱାଳ,
ଛେଣ୍ଡିପଦା, ଅନୁଗୁଳ

**(ଗ) ଜ୍ଞାତରୁ ଅଜ୍ଞାତ**

କଲ୍ୟାଣ ମାଷ୍ଟ୍ରେ ମୋର ଆଦ୍ୟ ଗୁରୁ। ଖେଳ କୌତୁକ ମଧ୍ୟରେ ସେ ଶିଶୁ ମନକୁ ପାଠ ଆଡ଼କୁ ଆକୃଷ୍ଟ କରନ୍ତି। (ଆଜିର Jolley Method of Teaching ବା ଆନନ୍ଦମୟ ଶିକ୍ଷାଦାନ) 'ଞ' ର ଉଦାହରଣ 'ରେଞ୍ଚି' ନ ଦେଇ ସେ ଦେଉଥିଲେ 'ଛୁଞ୍ଚି', 'କଇଞ୍ଚି', 'ଖଇଞ୍ଚି' ଇତ୍ୟାଦି। ଶିଶୁକୁ ଦାୟିତ୍ୱବୋଧ ଶିଖେଇବା ପାଇଁ ଗାଉଥିଲେ

ପିଲାଏ, ନଦେଲେ ଧଡ଼ା, ପଶିବେ ହଡ଼ା, ଟାଣିବେ ନଡ଼ା, ସ୍କୁଲ ଘରଟି ଯିବ ଉଜୁଡ଼ା, ବଗିଗ୍ଚି ମଧ୍ୟ ହେବ ଉଜୁଡ଼ା, ଆଉକି ଖାଇବ କାକୁଡ଼ି, ଖଡ଼ା, ମାଷ୍ଟର ବାପୁଡ଼ା ହୋଇବ ତଡ଼ା ଇତ୍ୟାଦି।

ଅନୁଭୂତି
ଈଶ୍ୱର ଚନ୍ଦ୍ର ପ୍ରଧାନ ଟାକୁଣ୍ଡାପାଳ, ଅନୁଗୁଳ

**(ଘ) ଏ ଯୁଗର ଗୁରୁକୁଳ**

ଦୂର ଦୂରାନ୍ତରୁ ଆସି ଅନେକ ସଂଭ୍ରାନ୍ତ ବଂଶଜ ଛାତ୍ର କଲ୍ୟାଣ ମାଷ୍ଟ୍ରଙ୍କ ଘରେ ରହି ପଢ଼ନ୍ତି ଅଭିଭାବକମାନଙ୍କର ଦୃଢ଼ ବିଶ୍ୱାସ, "ଆମ ପିଲା ମଣିଷ ହେବ।" ଆମର ଏକ ସଂଭ୍ରାନ୍ତ ପରିବାର। ମୋ ବଡ଼ବାପାଙ୍କ ପୁଅ ଯଦୁ ଭାଇ, ମୁଁ ଟାକୁଣ୍ଡା ପାଳ ସଂଭ୍ରାନ୍ତ ବଂଶର ଈଶବର ଚନ୍ଦ୍ର ପ୍ରଧାନ କଲ୍ୟାଣ ମାଷ୍ଟ୍ରଙ୍କ ଘରେରହି ପଢ଼ ସକାଳେ ତାଙ୍କ ସଙ୍ଗେ ବରପଦା ସ୍କୁଲକୁ ଆସୁ, ସଂଧ୍ୟାରେ ତାଙ୍କ ସହିତ କୋଶଳା ଯାଉ। ମୁଁ ଥାଏ ଅତି ସାନ। ଗୁରୁ ମା ମୋତେ କୋଳରେ ଶୁଏଇ ମୋର ସେବାଯତ୍ନ କରିଛନ୍ତି। ଅନେକ ଗରିବ ଛାତ୍ର ମଧ୍ୟ ତାଙ୍କ ଘରେ ରହି ପଢ଼ିଛନ୍ତି। ୧୯୦୭ ରେ ଶିକ୍ଷକତା କଲା ଦିନରୁ ଏହିପରି ଛାତ୍ରଛାତ୍ରୀଙ୍କ ଯତ୍ନ ସେ ନେଉଥିଲେ ବୋଲି ବଡ଼ ବଡ଼ଙ୍କ ଠାରୁ ମୁଁ ଶୁଣିଛି।

ଅନୁଭୂତି
ମହେଶ୍ୱର ପ୍ରଧାନ, ବରପଦା, ଅନୁଗୁଳ

# ସାହିତ୍ୟ ବିଭାଗ

## (ପଦ୍ୟ)



## କଳିଯୁଗ ଭାଗବତ

ରାଜା ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦେଓ ଭଞ୍ଜ
ମୟୂରଭଞ୍ଜ ମହାରାଜା
ସୂର୍ଯ୍ୟବାଗ ପ୍ୟାଲେସ୍ , ବିଶାଖାପାଟଣା

ଶୁଣ ଭାଇ ଡ଼େରି କର୍ଣ୍ଣକୁ
କଳିଯୁଗର ଏ ଭାଗବତକୁ (ଘୋଷା)
ରାମଚନ୍ଦ୍ର ତ୍ରେତାଯୁଗରେ କହିଥିଲେ
ଯିବାକାଳରେ, ଜନମ ହୋଇବି କଳିକାଳେ ମୁହିଁ
ସହସ୍ର ସହସ୍ର ନେତା ରୂପରେ ।୧।
ଯୁଗ ହେବ ପରିବର୍ତ୍ତନ , ବଡ଼ ସାନ ହେବେ ସମାନ,
ଭାସି ଯିବେ ରାଜା, ରହିବେ ପରଜା
ଦେଶ ହେବ ଲୋକତନ୍ତ୍ରେ ଶାସନ ।୨।
କଳିଯୁଗେ ହୋଇବ ରଣ , ନାମ ତାର ଇଲେକସନ
ବ୍ରହ୍ମଶର ଆଦି ନଥିବ ସେ କାଳେ
ଅସ୍ତ୍ର ହେବ ନୋଟ ବିଡ଼ା ବଣ୍ଟନ ।୩।
ଆସିଗଲେ ଇଲେକ୍ସନ, ବାହାରିବ କାଳିଆ ଧନ,
ନେତାମାନେ ଯାଇ ଗାଆଁରେ ପଶିବେ,
ଗର୍ଜନ କରିବ ମାଇକ୍ରୋଫୋନ ।
ଶହ ଶହ ଗାଡ଼ି ଛୁଟିବ , ପେଟ୍ରୋଲର ସୀମା ନଥିବ,
ଟାଉଟର ବଂଶ ଦେଶରେ ବ୍ୟାପିବେ,
ଖାଣ୍ଟି ମିଛି ତାଙ୍କ ଧରମ ହେବ ।୫।
ହାତ ଯୋଡ଼ି ମାଗିବେ ଭୋଟ୍, ପକେଟରେ ଭରତି ନୋଟ୍,
ବୋଲିବେ ସରଗୁଁ ଆଣିବୁ ଲକ୍ଷ୍ମୀଙ୍କୁ
ଭରିଦେବୁ ତୁମ ପେଡ଼ି ଓ ପେଟ ।୬।
ସେବା ଭକ୍ତି ଯାହାଙ୍କ ମନ, ନମିଳିବ ତାହାଙ୍କୁ ସ୍ଥାନ,
ନେତାଏ ଡ଼େଇଁବେ ହୋଇ କୋଟିପତି,
ଗରିବେ ମରିବେ ମାଛି ସମାନ ।୭।
ଭଣେ ପୂର୍ଣ୍ଣଚନ୍ଦ୍ର ରାଜନ, ଏ କି କଲ ଆରତ ତ୍ରାଣ
ରାମ ରାଜ୍ୟେ ହେଲା ଅସୁର ଶାସନ
ଧନ୍ୟ ତୁମ ମାୟା ହେ ଜନାର୍ଦ୍ଦନ ।୮।

ସୌଜନ୍ୟ : ସମାଜ



# ସୁନାଶଗଡ଼

ଶ୍ରୀ ସୁଭାଷ ଚନ୍ଦ୍ର ମହାପାତ୍ର

ମନେ ପଡ଼ିଯାଏ ପିଲାଦିନ କଥା
ମଦନ ମୋହନ ସୁନାଶଗଡ଼ ।
ଏକ ଶିଳା ଶୈଳ ବୁଢ଼ୀ ଠାକୁରାଣୀ
ଦେବୀ ଦ୍ୱାର ସ୍ୱର୍ଣ ପବନଗଡ଼ ।। ୧ ।।
ଆପଣାର ସାତ ଭଉଣୀଙ୍କ ମେଳେ
ପ୍ରସାଦ ସେବନ ଶୋଭା ଚାତୁରୀ ।
କରି ଦେବୀ ଯହୁଁ ଫିଙ୍ଗି କୃପାକୁମ୍ଭ
ନବଦ୍ୱାରେ ରଖିଥିଲେ ଦେହୁରୀ ।।୨ ।।
ଦିହୁଡ଼ି ସଳିତା ଦିବସ ସବିତା
ନିଶିଚନ୍ଦ୍ର ତାରା ଆଲୋକ ଶିଖା ।
ଆଶା ସୁବର୍ତ୍ତିକା ଶ୍ରୀମନ୍ତ ଚଣ୍ଡିକା
ପ୍ରସ୍ତର ବନର ମହାନାୟିକା ।।୩ ।।
ପାଶେ ଜଳାଧାର ପାଶେ ଜନାଧାର
ବିଦ୍ୟା ବିକାଶ ବିପୁଳକୀର୍ତ୍ତି ।
କୃପାକୁମ୍ଭ ସିଞ୍ଚି ସେ ନବ ବିରଞ୍ଚି ଶିବ
ବିଷ୍ଣୁ ବେନି ପାରୁଶେ ସଞ୍ଚି ।।୪ ।।
ଦେବୀ ଭାଗବତ ଦେବୀ ଭାବଗତ
ଦିବ୍ୟ ସାଧନାର ପରମ ପୀଠ ।
ଯଞ୍ଜମୟ ପିଣ୍ଡ ସିଦ୍ଧ ଏ ଭୂଖଣ୍ଡ
ଶ୍ରୀ ଶୈଳ ଶ୍ରୀ କ୍ଷେତ୍ର ପରମ ମଠ ।।୫ ।।
ସେହି ଭାବେ ଦେବୀ ପାହାଡ଼ ଚଢ଼ିଲେ
ସୁଭଦ୍ରା ରୂପରେ ସୁନାଶଗଡ଼େ
ହରିହର ଜଗନ୍ନାଥ ବଳଭଦ୍ର ଶକ୍ତି -
ଶୂଳ-ସୁଦ -ର୍ଶନ ସତ୍ୱରେ ।।୬ ।।
ପ୍ରଭୁ ଜଗଦୀଶ ସୁନାଶଗଡ଼ୀଶ
ଆଶା ଅନୁରାଗ ପ୍ରାଣ ସମ୍ପତ୍ତି ।
ତବ ଦାସ ଶିଷ୍ୟ ସୁତ ଏ ସୁଭାଷ
ନିବେଦେ ପ୍ରପତ୍ତି ଭାବ ବିପତ୍ତି ।।୭ ।।
ବଳଭଦ୍ର ବଳେ ଭଦ୍ରତା ବିକଶୁ
ସୁଭଦ୍ର ଆଣିକ୍ଷେ ଶୁଭ ସଞ୍ଚରୁ ।
ସୁଦର୍ଶନ ଦର୍ଶନେ ପ୍ରାଣ ପଶୁ ସୁନା
ଶଗଡ଼ ସଂଜୀବନୀ ଗୁରୁ ।।୮ ।।
ହେ କ୍ଷେତ୍ର ମହାନ ମୋର ପ୍ରାଣଧନ
ଐଂ ଐ ଶ୍ରୀ ନିର୍ଦ୍ଦେଶ ହ୍ରୀଂ ହୃଦ୍ୟେଗତି ।
ଶ୍ରୀ ଶୁଭସଂକେତ ମହା ବୀଜମନ୍ତ୍ର
ଦିଅ ମାତା ଯେନ ସୁତ ପ୍ରଣତି ।।୯ ।।

*(ଗ୍ରାମ : ହୁଲୁରିସିଂହା)*
*ଜେ. ୧୧୦, ରିଜର୍ଭବ୍ୟାଙ୍କ ଅଫିସର୍ସ କ୍ୱାର୍ଟର୍ସ*
*ଅମୀର ପେଟ, ହାଇଦ୍ରାବାଦ - ୫୯୦୧୬*



# ଅନୁଗୋଳ

ଅଧ୍ୟାପିକା : ଡ଼ଃ ଇନ୍ଦିରା ଦାଶ
ମହିଳା ମହାବିଦ୍ୟାଳୟ, ଅନୁଗୋଳ

ଅନୁଗୋଳ
ମୋ ଆତ୍ମାର ଜୀବନ୍ତ ସହର
ସ୍ମୃତିରେ , ସ୍ୱପ୍ନରେ
ବିଶ୍ୱାସରେ ଛଳଛଳ
ମାଟି ଓ ପବନ, ତାହାର ।
ବର୍ଷ ବର୍ଷ ସଂପର୍କର
ଡ଼ୋରି ବନ୍ଧା ତା ସାଥିରେ
ଯେମିତି ଭକ୍ତଟିଏ ବାରମ୍ବାର
ଭିଜୁଥାଏ ଅମଳିନ ଭକ୍ତିର
ଔଜ୍ଜ୍ୱଲ୍ୟ ଭିତରେ ।
ଆଖି ଖୋଲିଲେ ଦିଶେ ପଞ୍ଚଧାରା
ସାତ କୋଶିଆ ଗଣ୍ଡରେ କୁମ୍ଭୀର
ଗହନ ଜଙ୍ଗଲ ଭରା
ଚେର ମୂଳ କାଠ ଓ ବାଉଁଶ
ବାଘ, ଭାଲୁ, ମିରିଗ ଓ ହାତୀ
ବସିଥାନ୍ତି ମିତ
ପ୍ରକୃତିର ସବୁଜ ପରଶେ
କୋଣ ଅନୁକୋଣ ବାସ୍ନାୟିତ
ସୁନାଶଗଡ଼ରେ ଉଭା
ବୁଢ଼ୀ ଠାକୁରାଣୀ
ଶୈଳ ଶ୍ରୀକ୍ଷେତ୍ରର
ମର୍ହାହ ସମ୍ଭାର
ଶକ୍ତିପୀଠେ ଅଷ୍ଟଦୁର୍ଗା
ହିଙ୍ଗୁଳାଇ, ପଷ୍ଟିମେଶ୍ୱର
ଲୁଧୁଣୀ ଖୁଲୁଡ଼ି ସୁନ୍ଦରୀ
ଦିଶିଯାନ୍ତି ମୋ ଭାବନାର
ଦିବ୍ୟ ସରୋବରେ ।
ବୀର ପ୍ରସବିନୀ ମାଟି
ଇତିହାସ କଥା କହେ ଉଠି
ଝୁରେ ରାଜା ସୋମନାଥ ଦେବ
ସଂଗ୍ରାମୀ ପବିତ୍ର ମୋହନ
ବିପ୍ଳବିଣୀ ମାଳତୀ ଦେବୀଙ୍କୁ
ନବକୃଷ୍ଣ କଂଠେ
ସମାଜ ବାଦର ସ୍ୱର ଅହରହ ଶୁଭେ ।
ପ୍ରଜା ଆନ୍ଦୋଳନ ଠାରୁ
ସ୍ୱାଧୀନତା ଆନ୍ଦୋଳନ ଯାଏ
ଝାସ ଦେଇଥିବା ଅମୃତର ମୂର୍ତ୍ତିମାନେ
ନାଚିଯାନ୍ତି ମୋ ଆଖିରେ
ଉଲ୍ଲସିତ ଛାତିତଳେ
ଉଚ୍ଛ୍ୱାସର ମ୍ରିୟମାଣତାରେ ।
ସୃଜନ ମାଟିରେ ଯାର
ପୁତ, କାଳଜୟୀ
ଗଡ଼ନାୟକ ରାଧାମୋହନ
ଛାନ୍ଦସିକ କବିହୋଇ
ଲେଖିଗଲେ ମଣିଷର କଥା
ଶିଳ୍ପାୟନ ମାଟିର ବେଦନା
ବଇଭବ ମଣ୍ଡିତ ଆଜି
କୃଷ୍ଣ ହୀରକ ସହର
ଯହିଁ ଶିଳ୍ପ ମାଳ ମାଳ
ଚାରିପଟେ କଳୁଷିତ ଆଜି
ସବୁଜ ପଣତ ତୋ ଚିରିଯାଏ
ବୃକ୍ଷହୀନ ଟାଙ୍ଗରା ପାହାଡ଼େ
ବିଷାକ୍ତ ପବନରେ ଛଟପଟ
ତୋର ଖିନ୍ ଭିନ୍ ଦେହ
ମଧ୍ୟ ରାତ୍ରିରେ ଶୁଭିଯାଏ
ବିସ୍ଥାପିତର କ୍ରନ୍ଦନର ରୋଳ ।
ସ୍ଥିତପ୍ରଜ୍ଞ ମାଟିଏ ତୁମେ
ଶୋକ , ଅଭିଳାଷ, ଯାନ୍ତ୍ରଣାର ଉର୍ଦ୍ଧ୍ୱରେ
ମୁଠାଏ ମାଟିକୁ ତୋର
ଜାବୁଡ଼ି ଧରିଲେ ଛାତିରେ
ଆକାଶ ନଇଁ ପଡ଼େ ଶ୍ରଦ୍ଧାରେ
ହସତୋର ଝରିପଡ଼େ
ଉଭାନ୍ ପକ୍ଷୀର କାକଳୀରେ
ସଭିଙ୍କୁ ଆପଣାର କରିନେଉ
କେଉଁ ଉଦାର ପଣରେ ।

***



# ଶବାସନରେ ବୀର ଓଡ଼ିଆ

ଶ୍ରୀ ବିପ୍ର ଆଚାର୍ଯ୍ୟ
(Retd. I.P.S., I.G. Police)

ଏ ! ଲୋକ !
ଅତଡ଼ା ଉପରେ ବସି
ନଈ ପାଣିରେ ପାନପିକ ପକଉଛୁ ଯେ
ଡର ଲାଗୁନାହିଁ ?
ସବୁ ଚଉବାହା ଉପରେ ଛାଡ଼ି
ଡର କାହାକୁ ଭୟ କାହାକୁର ଗୀତ
ତୋ ବେସୁରା କଣ୍ଠରୁ
ଘଡ଼ଘଡ଼ ଶୁଭୁଚି ଯେ,
ତୋ ପାଦ ତଳୁ ମାଟି ଖସି ଯାଉଚି ଯେ,
ତତେ ଦିଶୁନାହିଁ,
ନା, ଜାଣି ଜାଣି ଦେଖୁ ନାହୁଁ ?
ମୁଁ ଜାଣେ ।
ନା ତୁ ଦେଖୁଚୁ ତଳକୁ
ନା ଉପରକୁ ।
ମନ ଭୁଲାଣିଆ ଚକା ଆଖି
ମଧ୍ୟ ଆଉ ଦିଶୁ ନାହିଁ ।
କେମିତି ଦିଶିବ ଯେ !
କେତେବେଳେ କିଏ ସିନା
ବାନ୍ଧି ନେଇଥିଲା ଚମ ଦଉଡ଼ିରେ,
ଏବେ ପରା ବନ୍ଧା ସିଏ
ପଣ୍ଡା ପଡ଼ିଆରୀ ନାଲି ଗାମୁଛାରେ ।
କେତେବେଳେ ଭୋକରେ ତ
କେତେବେଳେ କା' ଦୟାର
ଭୁରି ଭୋଜନରେ ।
ଦେଉଳ ତାଟି କବାଟ
ପଡ଼ିଚି ଯେ ପଡ଼ିଚି
କାହା ଇଚ୍ଛା କାହା ଅନିଚ୍ଛାରେ ।
ଗହଣ ବିକେର କେତେ ଥାଟ ପଟୁଆର
ତୋ ଆଖିକୁ ଜଳକା କରିଦିଏରେ ଓଡ଼ିଆ,
ମିଛ ରାଜପଣ ତୁଚ୍ଛା ସୁଆଙ୍ଗରେ
ସବୁ କଥା ଭୁଲି ଯାଉ
ଭେରୀ ତୁରି କାହାଳି ବାଜାରେ ।
ତୁ ଆମ୍ ଆଦ୍‌ମୀରେ ଓଡ଼ିଆ,
ଦିଲ୍ଲୀ ଦରବାରରେ ହେଉ
କି ଭୋବନିଶୋର ଉଆସରେ ।
ସମସ୍ତେ ଧାଉଁଛନ୍ତି
ତୋ' ନାଁର କୁହୁକ ମନ୍ତ୍ରରେ
ଟେକି ଧରିବାକୁ ତତେ
କେଉଁ ଗୋଟେ କଳ୍ପିତ ରେଖାର
ଉପରକୁ, ନାନା କୂଟ କପଟ ପଶାରେ ।
ତୁ କିନ୍ତୁ ନିର୍ଲିପ୍ତ ନିର୍ବିକାର
ହଡ଼ା ବଳଦର ପାକୁଳିରେ
ଦାରୁଭୂତ ମୁରାରୀର
ଶୂନ୍ୟ ଚାହାଣୀରେ ।
ସତେ ତୋର ଯାଏ ଆସେ ନାହିଁ ?
କିଏ ଦେଲା କିଏ ନେଲା,
ଅବା ସବୁ ଚାଲିଗଲା କା' ପେଟକୁ
ଅଂଶୁଘାତ ମହାବାତ୍ୟା
ଧୋଇ ମରୁଡ଼ିର ହିସାବ ଖାତାରେ ।
ଉଠୁ, ଠିଆ ହୁଅରେ ରାଣ୍ଡୀ ପୁଅ ଅନନ୍ତା !
ସୁଅ ମୁହଁରେ ଭାସିଯିବା ଆଗରୁ
ଛାଡ଼ି ଦେ' ପଡ଼ିରହି ଶବାସନେ
ସ୍ୱପ୍ନଲୋକରେ ଉଠିବାର ନିଶା
ଆପଣାର କରି ନେ
ଦୃଢ଼ ପଣେ ନିଜ ବାହୁ ବଳେ
ଲଢ଼ି ଲଢ଼ି ଉପରକୁ ଉଠିବାର ଆଶା ।
କିଏ କ'ଣ କରୁ ବା ନକରୁ
ସବା ଶେଷେ ରହିଚି ଯେ
କାଳିଆ ଭରଷା ।

*କବିଙ୍କର 'ଅଚିନ୍ତା ମଣ୍ଡପ' କାବ୍ୟରୁ ସଂଗୃହୀତ*

*ଠିକଣା : ଜି - (୨)-୪୩ ଗୋଦାବରୀଶ ନଗର*
*ବ୍ରହ୍ମପୁର - ୭୬୦୦୦୧*

# ମହାରାଜା ସୋମନାଥ ସିଂହ ଜଗଦେବ ସ୍ମରଣେ

ଡ଼କ୍ଟର ସଦାନନ୍ଦ ପରିଡ଼ା

ତୁମେତ ଶୋଇଛ ଆଜି ଧରିତ୍ରୀର ନରମ ଶେଯରେ,
ତୁମେ ତ ଯାଇଚ ହଜି ପ୍ରକୃତିର ସବୁଜ କୋଳରେ ।
ତୁମ ସ୍ୱାଭିମାନ ଗୀତି ଗାଏ ନିତି ସ୍ୱାଧୀନତା ଝଡ଼ ।
ତୁମରି ଅକ୍ଷୟ କିର୍ତ୍ତୀ ମୂକ ସାକ୍ଷୀ କୃଷ୍ଣଚକ୍ରଗଡ଼ ।
ତୁମେ ସାଜିଥିଲ କେତେ ଶତଶତ ଚତୁରଙ୍ଗ ବଳ,
ତୁମେ ଜାଣିଥିଲ କେତେ ବ୍ୟୂହରଚି ରଣ କଉଶଳ ।
ତୁମେ ଏକ ବାହୁବଳେ ସ୍ୱାଧୀନ ରଖିଣ ଗଡ଼ଜାତ,
ଇଂରେଜ ଶାସକଗଣେ ବାରମ୍ବାର କରିଲ ପରାସ୍ତ,
ତୁମେ ଦୟାଳୁ ଧାର୍ମିକ ଗୋ ବ୍ରାହ୍ମଣ ପୂଜକ ରକ୍ଷକ,
ନୋହିଲେ କି ପରାହତ କରିଥାନ୍ତ! ବିଦେଶୀ ଶାସକ,
ଗୋହତ୍ୟା ଭୟରେ ସିନା ତୁମ୍ଭେ କରିଥିଲ ଅସ୍ତ୍ରତ୍ୟାଗ,
ଜଳିଜଳି ସରିଗଲ ହେଲେ ବୃଥା ନୁହେଁ କେବେ ତୁମ୍ଭ ଆତ୍ମତ୍ୟାଗ
ଆଜି ଏ ଶୁଭଲଗନେ ସୁମରୁଛୁ ତୁମ୍ଭଙ୍କୁ ହେ ସନ୍ତ
ତୁମରି ଆଦର୍ଶ ଯୋଗୁଁ ଅନୁଗୁଳ ଆଜି ବି ଗର୍ବିତ ।


ମହାରାଜା ସୋମନାଥ ସିଂହ ଜଗଦେବ

ମୈତ୍ରୀ ନଗର, ଶିକ୍ଷକ ପଡ଼ା ଅନୁଗୁଳ
୯୪୩୮୫୦୭୪୮୬



# ଚିକିତ୍ସକଙ୍କୁ ଆହ୍ବାନ

ଶ୍ରୀମତୀ ବିଜୟଲକ୍ଷ୍ମୀ ମାଝୀ

ତୁମେ ଏକା ଆମ ସାହା
ତୁମେ ଆମ ବାପ ମାଆ
ଏଜୀବନ ଦେଲୁ ତୁମ ହାତେ
ଘର ମୋର ଯିବ ଭାସି
ଦୟାକର ଆଜ୍ଞା ଆସି
ତୁମ ବିନା ଗାହା ନାହିଁ ଏଥେ ।୧।
ମରିଗଲି ଆଲୋ ବୋଉ!
ଛଟପଟ ହୁଏ ପ୍ରାଣ
ସହି ମୁଁ ନ ପାରିବି ଆଉ
ଏ ବାଳକ ରଖ ପ୍ରାଣ
ଆହେ ପ୍ରଭୁ ନାରାୟଣ
ଆଉ ଦିଅ ନାହିଁ ମୋତେ
ଏ ଯନ୍ତ୍ରଣା ଦାଉ ।୨।
ଗରଭିଣୀ ଗରଭ ବ୍ୟଥା
ସ୍ୱାମୀର ଆକୁଳ ଭାଷା
ତାଙ୍କ ପ୍ରାଣ କରେ କି ଆକୁଳ
ବିବେକର ବେକ ମୋଡ଼ି
ମାନବିକତାକୁ ଏଡ଼ି
ଭାଷନ୍ତି ଗମ୍ଭୀର ବାଣୀ ଅଭିଜ୍ଞ ଡ଼ାକ୍ତର ।୩।
ଏ କେସ୍ ସହଜ ନୁହେଁ
କଟାକଟି କାମ ଇଏ
ଧାଇ! ତାକୁ ଦିଅତ ଜଣାଇଁ
ଶହେ ଦୁଇଶହ ଦେଉ
ନହେଲେ ସେ ପଡ଼ିଥାଉ
ଦାୟିତ୍ୱ ମୁଁ ନେବି କାହିଁ ପାଇଁ ।୪।
ଧନ୍ୟ ତୁମେ ଚିକିତ୍ସକ !
ଧନ୍ୟ ତୁମର ବିବେକ !
ପ୍ରଫେସନ ତୁମର ମହାନ
ସାମାନ୍ୟ ପଇସା ପାଇଁ
ଲୋଭ ବଶବର୍ତ୍ତୀ ହୋଇ
କଳଙ୍କ ମଣ୍ଡିତ ହୁଅ, ଏଇ ତୁମ ସ୍ଥାନ ।୫।
ବିବେକୀ ହୋଇଲେ ତୁମେ
ପୂଜ୍ୟ ହେବ ବିଶ୍ୱଭୂମେ
କୋଟି ପ୍ରାଣେ ପାତିବ ଆସନ
ଅବିବେକୀ ହେବ ଯେବେ
ଅର୍ଥ ମୂଳ କରି ଭବେ
କୋଟି ଗୁଣେ ଘୃଣ୍ୟ ହେବ ତୁମର ଜୀବନ ।୬।
ସରଗଠୁ ବଳି ସୁଖ
ସଂସାରେ ରହିଛି ଦେଖ
ନର୍କଠାରୁ ଅଧିକ ଯନ୍ତ୍ରଣା
ମିଳୁଛି ଏଇ ଧରାରେ
ନିଜ କର୍ମ ଅନୁସାରେ
ଭଲମନ୍ଦ ସବୁ ଆମ
ହାତେ ସରଜନା ।୭।
ତେବେ ତୁମେ କାହାପାଇଁ
ମହତକରମେ ଥାଇ
ନ ଅର୍ଜିବ ମହତ ଧରମ
ଦୁର୍ଲ୍ଲଭ ମାନବ ଜନ୍ମ
ସାର୍ଥକ ହୋଇବ ସିନା
ସ୍ୱାର୍ଥ ତେଜି ସେବି ଥିଲେ
ନର ନାରାୟଣ।।୮।

(ଯେଉଁ କେତେକ ଡ଼ାକ୍ତର ପଇସାକୁ ଆଗି ଆଗରେ ରଖି ଛୁରୀ ଧରନ୍ତି ସେମାନଙ୍କ ପାଇଁ ପଦେ।)

ଲେଖିକା ବର୍ତ୍ତମାନ ବୃନ୍ଦାବନରେ ସନ୍ନ୍ୟାସୀନି ଜୀବନ ଯାପନ କରୁଛନ୍ତି, ଏକବିତାଟି ବିଜୟଲକ୍ଷ୍ମୀ ଗ୍ରନ୍ଥାବଳୀରୁ ଉଦ୍ଧୃତ।

ଡ଼ଃ. ଧନେଶ୍ୱର ମାଝୀ
ସ୍ତ୍ରୀ ଓ ପ୍ରସୂତୀରୋଗ ଚିକିତ୍ସା ବିଶେଷଜ୍ଞ
ଖମାର , ବାଗଡ଼ିଆ, ଅନୁଗୁଳ-୨୫୦୪୫୯



# କନ୍ୟାଭ୍ରୁଣ

ଶ୍ରୀମତୀ ପୁଷ୍ପ ପ୍ରଧାନ

"ଗର୍ଭସ୍ଥ ସନ୍ତାନ
ପୁତ୍ର ନୁହେଁ କନ୍ୟା"
ଯେମିତି ଏଟା ବାକ୍ୟ ନୁହେଁ ବୋମା
ମାଆର ମର୍ଜି ଜାଣିବା ଆଗରୁ
ଏଇ ବିସ୍ଫୋରଣରେ
ଘରେ ସମସ୍ତେ କୋମା ।୧।
ତାପରେ ଆରମ୍ଭ
ଆଉ ଏକ ଅଧ୍ୟାୟର
ପାହି ପଡ଼ିଶାଙ୍କ ବୋଲଣାର
ଶାଶୁ ନଣନ୍ଦଙ୍କ ଗଞ୍ଜଣାର
ଏଗୁଡ଼ାକୁ ବି ସହ୍ଯ କରି ଦେଇ ହୁଅନ୍ତା
କିନ୍ତୁ ସବୁଠୁ ବେଶୀ ବାଧେ
ସ୍ୱାମୀଙ୍କ ବ୍ୟସ୍ତତା
ଗର୍ଭପାତ ପାଇଁ ଗୁପ୍ତ - ମନ୍ତ୍ରଣାର
ସ୍ରଷ୍ଟା ପାଇଁ ତାର ପ୍ରତ୍ୟେକ ସୃଷ୍ଟି
ଏକ ଅନନ୍ୟ ଅନୁଭୂତି
ଦିବ୍ୟ ଚେତନା
ମଧୁର ଯନ୍ତ୍ରଣା
ମା ପାଇଁ ମାନେ ରଖେନି
ଗର୍ଭସ୍ଥ ଶିଶୁ ଲିଂଗର ବର୍ଗୀକରଣ
ସର୍ବଂସହା ସେ ପାବନୀ, ଧରିତ୍ରୀ
କରିଛି ପଣ
ଜନ୍ମଦେବ ନିଶ୍ଚୟ ତା
ପ୍ରାଣର ପ୍ରତିମ
"କନ୍ୟାଭୃଣ।"

ମାର୍ଫତ୍ - ଇଂ ବିନୋଦ ଚନ୍ଦ୍ର ପ୍ରଧାନ
M-II/8- ଡାମ୍ପିଙ୍ଗ୍ କଲୋନୀ, ଅନୁଗୋଳ

# ବନ୍ଦୀ ଆସାମୀ

ବିଭୁତି ଭୂଷଣ ବେହେରା



ବନ୍ଦୀଘରେ ଲୁହଝରେ
ଅନୁତପ୍ତ ଆସାମୀର,
ମୁହଁ ଖୋଲି କହିପାରେନା
ତା ଜୀବନର ପ୍ରାଚୁର୍ଯ୍ୟଭରା
ପୁରୁଣା ଅତୀତ,
ପୁରୁଣା ଜୀବନ ଧାରାର
କରିଥିବା ଭୁଲ,
ଆଉ ପାରେନା ସେ କରି
ବର୍ଣ୍ଣନା ବିସ୍ତୃତ ।
ଲୁହା ରେଲିଂ ସେପଟେ
ସେ ଦେଖୁଥିବା
ତା ଭବିଷ୍ୟତର ସ୍ୱପ୍ନ,
ଅଲଗା ପାଲଟିଯାଏ
ଭଙ୍ଗା ଆଇନାରେ ମୁହଁ ଦେଖିବା ପରି,
ସେ ଦେଖେ
ତା ମୁଖର ଖଣ୍ଡିତ ରୂପ
ମଳିନ ବିଷର୍ଣ୍ଣ ତାର
ଶ୍ମଶ୍ରୁଭରା ମୁଖ,
ଅଜଣା , ଅହେତୁକ - ଆତଙ୍କ ମିଶା
ତାର ରେଖାଙ୍କିତ ମୁହଁ,
ଦୁର୍ବଳ ଶରୀର ଆଉ ଉଦାସ ଚାହାଣୀ
ସଦା ଅବସନ୍ନ ଆଉ ସଂପୂର୍ଣ୍ଣ ନିଶ୍ଚୁପ,
ଏବେ ଖାଲି ଶୂନ୍ୟତାରେ
ଲୋତକ ତର୍ପଣ ଆଉ ପ୍ରାୟଶ୍ଚିତ,
ଖାଲି ପ୍ରାୟଶ୍ଚିତ ।

ଢୋଣକା,
ମୋ.: ୯୪୩୮୪୧୭୩୯୩



# ସତକୁହ ପ୍ରଭୁ

ଶାନ୍ତିଲତା ରଥ, ଶିକ୍ଷୟିତ୍ରୀ
ଜାମ୍ବୁସାହି ପ୍ରାଥମିକ ବିଦ୍ୟାଳୟ, ବ୍ରାହ୍ମଣବିଲ

ଅଗ୍ରପୂଜ୍ୟ ଆହେ ପାଠୁଆ ଠାକୁର
ତୁମକୁ ମୁଁ ପଚାରୁଛି
ସତକଥା ତୁମେ କହିବ ହେ ପ୍ରଭୁ
କପଟ ନରଖି କିଛି ।୧।
ପାଠୁଆ ଠାକୁର ବିଦ୍ୟାଦାତା ବୋଲି
ଛାତ୍ରଛାତ୍ରୀ ବିଦ୍ୟାଳୟେ
ପୂଜନ୍ତି ତୁମକୁ ବରଷକେ ଥରେ
ଭକତି ପୁଷ୍ପମାଲ୍ୟରେ ।୨।
ଦେଇ ବିଦ୍ୟାଦାନ, ହୋଇଛ ହେ ଧନ୍ୟ
ନାମ ସାର୍ଥକ କରିଛ
ସତକୁହ ପ୍ରଭୁ ଭକତି ପୁଷ୍ପରେ
ଆଜିକି ପୂଜା ପାଉଛ ? ।୩।
ଦିନୁଦିନ ତବ ପୂଜା ଆରାଧନା
ବଢ଼ିତ ଗଲାଣି ଏବେ
ସହରରୁ ଗାଁ ଗଳି କନ୍ଦିପୁଣି
ପୂଜା ହୁଏ ଠାବେ ଠାବେ ।୪।
ରାସ୍ତାର କଡ଼ରେ ଚଉକି ପକାଇ
ବାଟେ କାଠ ଗଣ୍ଡି ଛେକି
ଲୋକମାନଙ୍କଠୁ ହେଉଛି ଆଦାୟ
ତୁମ୍ଭ ନାମେ ଦାଦାବଟି ।୫।
ତୁମ ପୂଜା ସ୍ଥାନେ ଡ଼ାକବାଜି ଯନ୍ତ୍ରେ
ନଶୁଭେ ତୁମ୍ଭ ଭଜନ
ଅଶ୍ଲୀଳ ସଂଗୀତ ଧ୍ୱନିରେ ସତେକି
ଫାଟି ଯାଉଥାଏ କାନ ।୬।
ଭକ୍ତି ବିହ୍ୱଳତା ନାମେ ବହୁରଂଗେ
ଗୀତ ସୁରେ ନାଚି ନାଚି
ପୂଜନ୍ତି ତୁମ୍ଭଙ୍କୁ ସତ କୁହପ୍ରଭୁ
ଏହାକି ତୁମର ରୁଚି? ।୭।
ନାମ ସଂକୀର୍ତ୍ତନ ସାତ ଯେ ସପନ
ସବୁଠାରେ ହୋଇଲାଣି
ମଦ ନଆସିଲେ ତୁମ ବିସର୍ଜନ
ହୋଇପାରେ ନାହିଁ ପୁଣି ।୮।
ଆହେ ବିଦ୍ୟାଦାତା ସଦ୍‌ଜ୍ଞାନ ସଦ୍ ବୁଦ୍ଧି
ଦିଅ ସେପରି ଭକ୍ତଙ୍କୁ
ବାହ୍ୟ ଆଡ଼ମ୍ବର ନକରି ଭକ୍ତିରେ
ପୂଜା କରନ୍ତୁ ତୁମ୍ଭଙ୍କୁ ।୯।

# ପ୍ରତୀକ୍ଷା

ରୋହିତ କୁମାର ନାଥ

ଦୁର୍ବିସହ ପ୍ରତିଟି ସକାଳର
ଲୁପ୍ତ ସୂର୍ଯ୍ୟର ମ୍ଳାନ କିରଣରେ
ବଞ୍ଚିବାର ସଂଘର୍ଷ ଆଉ
ମରିବାର ପିପାସାରେ
ପ୍ଲାବିତ ଜୀବନ ଧାରା
ଖୋଜି ଖୋଜି ପାଏନା ମୁଁ



ଦଗ୍ଧିଭୂତ ଜୀବନର ସଂଜ୍ଞା
ତଥାପି ଖୋଜୁଛି ମୁଁ
ସକାଳରୁ ସଂଜଯାଏ
ଅପେରା ଫଗୁଣକୁ ସାଥୀକରି
ତମ ଫେରିବାର ବାଟକୁ ।

*ଢୋଣଜା,ମୋ. : ୯୯୩୭୨୪୨୬୨୯*

# ଅନୁଗୋଳ ପୌର ପାଳିକା

## *ଆଗାମୀ ଦିନ ପାଇଁ ଆମ ଯୋଜନା ଓ ତାର୍ ତୁରନ୍ତ କାର୍ଯ୍ୟ ପଦ୍ଧତି :*

- ଇଣ୍ଟିଗ୍ରେଟେଡ଼୍ ହାଉସିଂ ସ୍ଲମ୍ ଡ଼େଭଲପମେଣ୍ଟ ପ୍ରୋଗ୍ରାମ ମାଧ୍ୟମରେ ୩୩୨ ରହିବା ଗୃହ ନିର୍ମାଣ ପାଇଁ ଯୋଜନା ମୁତାବକ କାର୍ଯ୍ୟ । ଏଥିପାଇଁ ଅଟକଳ ରାଶି ୫କୋଟି ୧୪ଲକ୍ଷ ଟଙ୍କାର ୫୦% ପ୍ରତିଶତ ଆମ ପାଖକୁ ପହଞ୍ଚି ସାରିଲାଣି । ଏହାର ତୁରନ୍ତ କାର୍ଯ୍ୟ ଆରମ୍ଭ କରିବା ପାଇଁ ସମସ୍ତ ଅଞ୍ଚଳରୁ ଉପଯୁକ୍ତ ବ୍ୟକ୍ତିଙ୍କୁ ଚୟନ କରାଗଲାଣି ।
- ଅନୁଗୋଳ ପୌରପାଳିକା ଅଞ୍ଚଳର ଅନ୍ତେବାସୀ ତଥା ପ୍ରତ୍ୟେକ ଦିନ ଆସୁଥିବା ୫୦୦୦ ଯାତ୍ରୀମାନଙ୍କ ପାଇଁ ଉନ୍ନତ ଜଳଯୋଗାଣ ଯୋଜନା ପାଇଁ ଡ଼େରଜାଙ୍ଗ ଜଳପ୍ରକଳ୍ପ ବନ୍ଧଠାରୁ ସ୍ଥାୟୀ ପାନୀୟ ଶୁଦ୍ଧ ଜଳଯୋଗାଣ ପାଇଁ, ଅଟକଳ ରାଶି ୧୨କୋଟି ୪୨ଲକ୍ଷଟଙ୍କାର ମଞ୍ଜୁରୀପ୍ରାପ୍ତ ହୋଇ ସାରିଲାଣି ।
- ଅନୁଗୋଳ ବସ୍‌ଷ୍ଟାଣ୍ଡର ସ୍ଥାୟୀ ଗଠନ ଓ ତାର ଉନ୍ନତି କରଣ ପାଇଁ ଅର୍ଥ ମଞ୍ଜୁରୀ ତଥା ଟେଣ୍ଡର ଘୋଷଣା କରାଯାଇସାରିଲାଣି । ଖୁବ୍ ଶୀଘ୍ର ତାର କାର୍ଯ୍ୟ ଗମ୍‌ଡ଼ା କଲୋନୀ ସମ୍ମୁଖରେ ଆରମ୍ଭ ହେବ ।
- ଅନୁଗୋଳ ପୌର ପାଳିକା ମଧ୍ୟରେ ଥିବା ରାସ୍ତା, ପାଣି ଯୋଗାଣ ବ୍ୟବସ୍ଥା ତଥା ରହିଥିବା ପୁଷ୍କରିଣୀ ଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଯୋଜନା ଅନୁଯାୟୀ କାର୍ଯ୍ୟାରମ୍ଭ ହୋଇ ସାରିଲାଣି । ଏଥିପାଇଁ ୧୩ କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଅଛି ।
- ପରିମଳ ବ୍ୟବସ୍ଥାର ଉନ୍ନତି କରଣ ପାଇଁ ପରିଷଦ ଅଞ୍ଚଳକୁ ୪ଗୋଟି **ମଣ୍ଡଳ** (Zone)ମାଧ୍ୟମରେ ଘରୋଇ ଭାବରେ ସଫେଇ କାମ କରାଯାଉଛି ।
- ସମସ୍ତ କର୍ମଚାରୀମାନେ ପରିଷଦକୁ ନିଜର ଏକ ମନ୍ଦିର ଭାବି, ତାର ଉନ୍ନତି କାମନା କରି କାର୍ଯ୍ୟରତ ।
- ଅନୁଗୋଳରେ ଏକ ସୁଦୃଶ୍ୟ ପାର୍କ ନିର୍ମାଣ ନିମନ୍ତେ ନାଲ୍‌କୋ ପକ୍ଷରୁ ସ୍ୱତନ୍ତ୍ର ଅନୁଦାନ ରୂପେ ୧କୋଟି ଟଙ୍କା ମଞ୍ଜୁର କରାଯାଇଅଛି । କିନ୍ତୁ ପ୍ରଶାସନିକ ଅବହେଳା କାରଣରୁ ଏହା ଅଦ୍ୟାବଧି ଆରମ୍ଭ ହୋଇପାରି ନାହିଁ । ତେଣୁ ଏଥିନେଇ ପରିଷଦ ଖୁବ୍ ଶୀଘ୍ର ଜିଲ୍ଲା ପ୍ରଶାସନ ନିକଟରେ ଉକ୍ତ ପାର୍କ ନିର୍ମାଣ ନେଇ ଦାବୀ ଉପସ୍ଥାପନା କରିବ ।

| | | |
|---|---|---|
| ***ରବିନ୍ଦ୍ର କୁମାର୍ ମିଶ୍ର*** | ***ସୁକାନ୍ତି ଦାଶ*** | ***ପୂର୍ଣ୍ଣଚନ୍ଦ୍ର ରାଉତ*** |
| ନିର୍ବାହୀ ଅଧିକାରୀ | ଉପନଗରପାଳିକା ଓ କାଉନ୍‌ସିଲର ବୃନ୍ଦ | ନଗରପାଳ |
| ଅନୁଗୋଳ ପୌର ପାଳିକା | ଅନୁଗୋଳ ପୌର ପାଳିକା | ଅନୁଗୋଳ ପୌର ପାଳିକା |

# NOW A NAVRATNA COMPANY





# NALCO

*a jewel in the crown*

With a consistent track record in capacity utilization, technology absorption, quality assurance, export performance and committed manpower, Nalco has emerged as India's leading aluminium company. It has been contributing significantly to the State and Central Government exchequers over the years through increased production and consistent posting of profits. With its second phase expansion, involving an investment of over Rs.5000 crore, scheduled to be completed by this year end, the company is all set for third phase expansion. Besides, plans are afoot for greenfield projects in countries like Indonesia, South Africa and Iran.

With time, all these remarkable achievements have translated into another creditable title for Nalco, now a Navratna.

Nalco owes its success to the strong determination and dedicated teamwork of its employees.

Our special gratitude to the Government of India and Government of Orissa for their continuous support and guidance through our 27-year long journey.

The vision to be a company of global repute continues...

नालको NALCO

*ordinary people, extraordinary attitude*



# ANGUL INDUSTRIAL TRAINING CENTRE

Affiliated to NCVT, New Delhi

## (RCMS CAMPUS) HAKIMPADA, ANGUL

## P.O.- HAKIMPADA, Dist- ANGUL, Pin- 759143

Telephone No: - 06764 - (i) 236108 (ii) 324255 (iii) 6764320063 Fax- No-06764-236978
E-Mail ID- angul itc@yahoo.co.in

COURSES OFFERED:

| Sl. No | Trade | Affiliated Units | | | | Applied for Additional units under sanction | | | Total Intake strength |
|---|---|---|---|---|---|---|---|---|---|
| | shifts | 1st | 2nd | 3rd | Total-22 | 1st | 2nd | Total-14 | Units-36 |
| 01 | Electrician | 04 | 04 | 02 | 10 | 02 | 02 | 04 | 14 |
| 02 | Fitter | 04 | 04 | 02 | 10 | 04 | 04 | 08 | 18 |
| 03 | Welder | 01 | 01 | - | 02 | - | - | - | 02 |
| 04 | Data Entry Operator | - | - | - | 01 | 01 | 02 | 02 | 02 |

**Sailent Features:**

(i) Established in the year 1985.
(ii) Highest in Intake capacity among the private I.T.C. in Orissa state.
(iii) Centrally located and well managed.
(iv) Recruited experienced principal and qualified faculty education.
(v) Enforced strict discipline and established best study environment.
(vi) Conducting regular classes, monthly & quarterly examination.
(vii) Conducting remedial classes for weaker students and keep regular contacts with their parents.
(viii) Our faculties are trained by CSTARI Kolkata to teach NIMI pattern syllabus.
(ix) We are having full-fledged stroe and well equipped library.
(x) We have installed modern fitter, welder and electrical work shops and air-conditioned computer laboratory with facilities of LAN connection, Printer, scan and Internet.
(xi) We provide 24 hours electric power and water supply.
(xii) We offered free computer education, Spoken English and drafting courses to all students.
(xiii) We provide facilities for sports and cultural activities.
(xiv) Our motto is to create quality, maintain the standard & inspire confidence.
(XV) We sincerely acknowledge that what what we could achieve now, it is for the Inspiration& Proper guidance rendered by the state council of Technical Education & Vocational Training, Orissa.

**ସୋମନାଥ ସିଂହ ଜଗଦେବ ତ୍ୟାଗଦିବସର ସାଫଲ୍ୟ କାମନା କରିବା ସଙ୍ଗେ ସଙ୍ଗେ ଉଦ୍ୟୋକ୍ତାମାନଙ୍କର ତଥା ଅନୁଗୋଳବାସୀଙ୍କର ସର୍ବବିଧ ମଙ୍ଗଳ କାମନା କରୁଛୁ**

**-ପରିଚାଳନା କମିଟି**



ମଶାଲ ଶୋଭାଯାତ୍ରା (ତା.୧୧.୦୮.୦୮)



ବୀରାଙ୍ଗଣା ଶୁକଦେଇ ବାହିନୀ ତାଳଚେର
ମହିଳା ମହାବିଦ୍ୟାଳୟ



ବନ୍ତଲା ମହାବିଦ୍ୟାଳୟର ସୋବନାଥ ବାହିନୀ
(ତା.୧୧.୦୮.୦୮)



ଇଂରେଜଦ୍ୱାରା ବିଧ୍ୱସ୍ତ କୃଷ୍ଣଚକ୍ରଗଡ



ସ୍ମୃତିକମିଟିର ସ୍ଥାୟୀ ସଭାପତି ଅନୁଗୁଳ ରାଜା ରୁଦ୍ରନାରାୟଣ ମହୀନ୍ଦ୍ର ଜଗଦେବ ପ୍ରଦୀପ ପ୍ରଜ୍ୱଳନ କରୁଛନ୍ତି । ପାଖରେ ପ୍ରତିଷ୍ଠାତା ଗୋବିନ୍ଦ ରାଜଗୁରୁ ଓ ଉପସଭା ପତି ବଂଶୀଧର ପ୍ରଧାନ ।



ତା.୧୧.୦୮.୦୮ ମାନ୍ୟବର ଗଣଶିକ୍ଷା ମନ୍ତ୍ରୀ ସଂଜୀବ କୁମାର ସାହୁଙ୍କର ପ୍ରଦୀପ ପ୍ରଜ୍ୱଳନ ।



ମଞ୍ଚାସୀନ ସମ୍ମାନିତ ଅତିଥିଗଣ



ମହାରାଜା ସୋମନାଥ ସିଂହଙ୍କ ୨୦୬ତମ ଜୟନ୍ତୀ ନିମାପଡାର ରାଜା ଛତ୍ରୀସ୍ୱର ସିଂହ ଶ୍ରୀ ଶରତ ଚନ୍ଦ୍ର ସିଂହଦେଓ ରାଏବ ସିଂହଙ୍କୁ ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତି କମିଟି ପକ୍ଷରୁ ଶ୍ରୀ ହେମାନନ୍ଦ ସାମନ୍ତ ପୁଷ୍ପଗୁଚ୍ଛମାଲ୍ୟ ଦେଇ ସ୍ୱାଗତ ସମ୍ବର୍ଦ୍ଧନା ଜଣାଉଛନ୍ତି । ତା.୧୧.୦୮.୨୦୦୬ ।

## ମହାରାଜା ସୋମନାଥ ସିଂହ ଜଗଦେବଙ୍କ ୨୦୮ ତମ ଜୟନ୍ତୀ ପାଳିତ ।

## ସୋମନାଥ ସିଂହ ପାଠ୍ୟ ପୁସ୍ତକରେ ସ୍ଥାନ ପାଇବେ : ମନ୍ତ୍ରୀ ସଂଜୀବ କୁମାର ସାହୁ

ତା.୧୧.୦୮.୦୮ ରେ ଅନୁଗୁଳ ସଭାଘରେ ଅନୁଷ୍ଠିତ ମହାରାଜା ସୋମନାଥ ସିଂହ ଜଗଦେବଙ୍କ ୨୦୮ତମ ଜୟନ୍ତୀ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗ ଦେଇ ଗଣଶିକ୍ଷାମନ୍ତ୍ରୀ ମାନ୍ୟବର ସଂଜୀବ କୁମାର ସାହୁ ସୋମନାଥ ସିଂହଙ୍କ ଶୌର୍ଯ୍ୟ, ପ୍ରଜାବତ୍ସଳତା , ସ୍ୱାଭିମାନ ଏବଂ ସ୍ୱାଧୀନ ଚେତନାର ଭୂୟସୀ ପ୍ରଶଂସା କରିଥିଲେ। ୧୮୫୭ର ସିପାହୀ ବିଦ୍ରୋହର ବହୁ ପୂର୍ବରୁ ସୋମନାଥ ସିଂହ ଏକାକୀ ଇଂରେଜ ବିରୁଦ୍ଧରେ ଅସ୍ତ୍ରଉତ୍ତୋଳନ କରିଥିଲେ। ମାତ୍ର ଇତିହାସ ତାଙ୍କ ବିଷୟ ନିରବ। ଏହି ବିଷୟରେ ସେ ରାଜ୍ୟ ତଥା କେନ୍ଦ୍ର ସରକାର ଓ ଐତିହାସିକ ମାନଙ୍କର ଦୃଷ୍ଟି ଆକର୍ଷଣ କରିବେ। ଏଣିକି ସୋମନାଥ ସିଂହ ଜଗଦେବ ଜୟନ୍ତୀ ଓ ତ୍ୟାଗ ଦିବସ ସରକାରୀ ଭାବେ ପାଳିତ ହେବ ଏବଂ ସୋମନାଥ ସିଂହ ପାଠ୍ୟ ପୁସ୍ତକରେ ସ୍ଥାନ ପାଇବେ। ଇତିହାସ ତାଙ୍କୁ ଭୁଲିଯାଇଥିବା ବେଳେ ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତି କମିଟି ତାଙ୍କସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ଯେଉଁ ପ୍ରୟାସ ଜାରି ରଖିଛି ତାହା ପ୍ରଶଂସନୀୟ। ତାଳଚେର ବିଧାୟକ ଶ୍ରୀ ମହେଶ ସାହୁ ମୁଖ୍ୟ ବକ୍ତା ଭାବେ ସୋମନାଥ ସିଂହଙ୍କ ଗୁଣାବଳୀର ପ୍ରଶଂସା କରି କହିଲେ ସୋମନାଥ ସିଂହଙ୍କ ପ୍ରଧାନ ମନ୍ତ୍ରୀ, କବି ଐତିହାସିକ ନୃସିଂହ ରାଜଗୁରୁଙ୍କ ଘର ନିକଟରେ ତାଙ୍କ ଘର ହୋଇଥିବାର ସେ ଗର୍ବିତ। ସମ୍ମାନିତ ଅତିଥି ଟାମଡା ଅଧ୍ୟକ୍ଷ ଶ୍ରୀ ଶକ୍ତି ପ୍ରସାଦ ପଟ୍ଟନାୟକ ପାଞ୍ଚଲକ୍ଷ ଟଙ୍କାରେ ସୋମନାଥ ସ୍ମୃତି ମଣ୍ଡପ ନିର୍ମାଣ କରିବେ ବୋଲି ଘୋଷଣା କଲେ। ପ୍ରକାଶ ଥାଉକି ଶ୍ରୀ ପଟ୍ଟନାୟକ ଅନୁଗୁଳ ନଗରପାଳ ଥିବା ବେଳେ ସୋମନାଥ ସିଂହ ଜଗଦେବଙ୍କ ପ୍ରତିମୂର୍ତ୍ତି ସ୍ଥାପିତ ହୋଇ ଥିଲା। ଏହାର ଉନ୍ମୋଚନ ଉତ୍ସବରେ ଓଡିଶାର ଅନ୍ୟତମ ବରପୁତ୍ର ବିଜୁ ପଟ୍ଟନାୟକ ସୋମନାଥ ସିଂହଙ୍କୁ ଓଡିଶାର ଦ୍ୱିତୀୟ ଖାରବେଳ ଭାବେ ନାମିତ କରିଥିଲେ। ସମ୍ମାନିତ ଅତିଥି ନଗରପାଳ ଶ୍ରୀ ପୂର୍ଣ୍ଣଚନ୍ଦ୍ର ରାଉତ କହିଲେ ସୋମନାଥ ସିଂହଙ୍କ ତ୍ୟାଗ ଦିବସ ନଗର ପାଳିକା ପାଳନ କରୁଛି ଓ କରିବ। ସମ୍ମାନିତ ଅତିଥି ରାଜ୍ୟ ଜଳ ସଂପଦ ଯୁଗ୍ମ ଶାସନ ସଚିବ ଶ୍ରୀ ଧରଣୀଧର ନାଥ ସୋମନାଥ ସିଂହଙ୍କର ଅନୁଗୁଳ ଅସ୍ମିତା ଓ କାବ୍ୟ କୃତିର ଆଲୋକ ପାତ କରିଥିଲେ। ପୂର୍ବତନ ନଗରପାଳ ଶ୍ରୀ ଭକ୍ତି ପ୍ରସାଦ ଦାଶ ସୋମନାଥ ସିଂହଙ୍କର ଗୁଣାବଳୀର ସ୍ତୁତି ଚାରଣ କରିଥିଲେ। ଯୋଗାଚାର୍ଯ୍ୟ ରାମ ଦେବ ବାବା ଯୋଗ ମହିମା ବର୍ଣ୍ଣନା କରିଥିଲେ। ସ୍ମୃତି କମିଟିର ପ୍ରତିଷ୍ଠାତା ଶ୍ରୀ ଗୋବିନ୍ଦ ରାଜଗୁରୁ କେତେକ ଐତିହାସିକ ଦଲିଲ ଉପସ୍ଥାପନ କରିଥିଲେ।

ଏହି ବର୍ଣ୍ଣାଢ୍ୟ ଉତ୍ସବରେ ସ୍ମୃତି କମିଟିର ସ୍ଥାୟୀ ସଭାପତି ଅନୁଗୁଳ ରାଜା ଶ୍ରୀ ରୁଦ୍ର ନାରାୟଣ ମହୀନ୍ଦ୍ର ଜଗଦେବ ଅଧ୍ୟକ୍ଷତା କରିଥିଲେ। ଉପ ସଭାପତି ଶ୍ରୀ ବଂଶୀଧର ପ୍ରଧାନ ସଭାକାର୍ଯ୍ୟ ପରିଚାଳନା କରିଥିଲେ। ସଂପାଦକ ଜୟାନନ୍ଦ ନାଏକ ବିବରଣୀ ପାଠ ଓ ଅତିଥି ପରିଚୟ ଦେଲେ। ଗୁରୁ ବିପିନ ଦାଶ ଓ ଦଳ ପ୍ରାରମ୍ଭିକ ସଂଗୀତ ଗାନ କଲେ। ପ୍ରସିଦ୍ଧ କବି ଶ୍ରୀ ହାଡିବନ୍ଧୁ ମିଶ୍ର ସୋମନାଥ ସିଂହଙ୍କ

ଜୀବନି ଆଧାରିତ ସ୍ୱରଚିତ କବିତା ପାଠ କଲେ। ଶ୍ରୀ ଅନୀଲ ଦେହୁରୀ ଏକତାର ବାଦନ କରିଥିଲେ।

ମନ୍ତ୍ରୀ ମହୋଦୟ ସୋମନାଥ ସ୍ମରଣିକା ଉନ୍ମୋଚନ କଲେ। ପ୍ରାରମ୍ଭରେ ଡଃ ବିପିନ ବିହାରୀ ସାହୁ ମହାରାଜା ସୋମନାଥ ସିଂହଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ବର୍ଣ୍ଣନା କରିଥିଲେ। ପୁରୁଣାଗଡ, ତୁମୁଣି ଓ କୃଷ୍ଣଚକ୍ର ଗଡକୁ ପର୍ଯ୍ୟଟନ ସ୍ଥଳୀ କରିବା ସହ ଅନୁଗୁଳକୁ ସୋମନାଥ ସିଂହ ଜିଲ୍ଲା ଓ ଅନୁଗୁଳ ସରକାରୀ ମହାବିଦ୍ୟାଳୟକୁ ସୋମନାଥ ସିଂହ ମହାବିଦ୍ୟାଳୟ ଭାବେ ନାମିତ କରିବାକୁ ଦାବି ହୋଇଥିଲା। ଅଶ୍ୱାରୂଢ଼ ପାଇକ ବାହିନୀ ପୁରୁଣାଗଡସ୍ଥ ଶ୍ରୀ ଜଗନ୍ନାଥ ମନ୍ଦିର , ଶ୍ରୀ ମଦନ ମୋହନ ମନ୍ଦିର ଓ ତୁମୁଣିସ୍ଥ ଅନୁଗୁଳ ଅଧିଷ୍ଠାତ୍ରୀ ମା କଳାପାଟ ମନ୍ଦିରରୁ ମଶାଲ ଶୋଭାଯାତ୍ରାରେ ଆସି ଅନୁଗୁଳର ପଶ୍ଚିମ ଦ୍ୱାର ଲିଙ୍ଗରା ପୋଲ ପାଖରେ ପହଞ୍ଚିବା ପରେ ସ୍ଥାୟୀ ସଭାପତି ସ୍ୱାଗତ କରିଥିଲେ। ବନ୍ତଳା ମହାବିଦ୍ୟାଳୟର ସୋମନାଥ ବାହିନୀର ଶତାଧିକ ଛାତ୍ରଛାତ୍ରୀ , ତାଳଚେରର ବୀରରାଣୀ ଶୁକଦେଈ ବାହିନୀ, ଏହି ଶୋଭା ଯାତ୍ରାରେ ଯୋଗ ଦେଇ ନଗର ପରିକ୍ରମା କରି ସୋମନାଥ ସିଂହଙ୍କ ମୂର୍ତ୍ତି ନିକଟରେ ସମବେତ ହେଲେ । ବିଶିଷ୍ଟ ଅତିଥି ମାନେ ରାଜାଙ୍କ ପ୍ରତିମୂର୍ତ୍ତିରେ ମାଲ୍ୟାର୍ପଣ ପରେ ଶୋଭାଯାତ୍ରା ଅନୁଗୁଳ ସଭାଘରେ ପ୍ରବେଶ କରିଥିଲା।

ପୂର୍ଣ୍ଣ ପ୍ରେକ୍ଷାଳୟରେ ବିପୁଳ ଉତ୍ସାହ ମଧ୍ୟରେ ସଭାକାର୍ଯ୍ୟ ଚାଲିଲା। ତାଳଚେର ମହିଳା ମହାବିଦ୍ୟାଳୟର ବୀରରାଣୀ ଶୁକଦେଈ ବାହିନୀର ଖଣ୍ଡା ଖେଳ ଓ ରଣ କୌଶଳ ପ୍ରଦର୍ଶନ ଉଚ୍ଚ ପ୍ରଶଂସା ଲାଭ କରିଥିଲା।

ଅଧ୍ୟାପକ ଲୋକନାଥ ପ୍ରଧାନ ଧନ୍ୟବାଦ ଅର୍ପଣ କରିଥିଲେ।



# ମହୀନ୍ଦ୍ର ଭବନ ରାଜପ୍ରାସାଦ, ଅନୁଗୋଳ

ରାଜା ବୀରବର ମାଗୁଣି ସିଂହଙ୍କ କର୍ତ୍ତୃକ ୧[illegible]୮୨ ମସିହାରେ ନିର୍ମିତ

ସ୍ଥାନ : [illegible]

ସହଯୋଗ ରାଶି - ପଚାଶ ଟ

# ଭାରତର ଶେଷ ସ୍ୱାଧୀନ ନରପତି

## ଅନୁଗୁଳ ରାଜା

## ସୋମନାଥ ସିଂହ ଜଗଦେବ

(ତା.୧୧/୦୮/୧୮୦୦ ରୁ ତା.୦୨/୦୬/୧୮୫୩ ଖ୍ରୀଷ୍ଟାବ୍ଦ)



ଡ଼ଃ. ବିପିନ ବିହାରୀ ସାହୁ

# ଭାରତର ଶେଷ ସ୍ୱାଧୀନ ନରପତି

## ଅନୁଗୁଳ ରାଜା

### ସୋମନାଥ ସିଂହ ଜଗଦେବ

ଓଡ଼ିଶାର କେନ୍ଦ୍ର ସ୍ଥଳରେ ଅବସ୍ଥିତ ଅନୁଗୁଳ ୧୮୪୮ ଖ୍ରୀଷ୍ଟାବ୍ଦ ଆରମ୍ଭ ପର୍ଯ୍ୟନ୍ତ ଏକ ଗଡ଼ଜାତ ରାଜ୍ୟ ଥିଲା । ଶେଷ ରାଜା ସୋମନାଥ ସିଂହ ଜଗଦେବ ଥିଲେ ଅତ୍ୟନ୍ତ ସ୍ୱାଧୀନ ଚେତା ଓ ସ୍ୱାଭିମାନୀ, ତେଜସ୍ୱୀ, ଶୌର୍ଯ୍ୟବାନ୍, ଗୁଣୀ, ଗୁଣଗ୍ରାହୀ, ପ୍ରଜାବତ୍ସଳ, ସୁଶାସକ, କରୁଣାର ଅବତାର, ନିରାଶ୍ରୟର ଶେଷ ଆଶ୍ରୟ । ବିଦେଶୀକୁ କର ଦେଇ ନିଜ ରାଜ୍ୟ ଶାସନ କରିବାଟା ଅପମାନ ଜନକ ମନେକରି ସେ କର ବନ୍ଦ କଲେ ।

କମିସନର ରିକେଟ୍‌ସ, ମିଲ୍‌ସ୍ ଓ ଐତିହାସିକ ଏଫ୍.ବି. ଲରିଙ୍କ ମତରେ - ସୋମନାଥ ସିଂହ ବୁଦ୍ଧିମାନ, ବିଚକ୍ଷଣ, ଜ୍ଞାନୀ, ଚତୁର ମାତ୍ର ଝୁଙ୍କି, ଆତ୍ମାଭିମାନୀ, ଗର୍ବୀ ଓ ସମସ୍ତ ରାଜାଙ୍କ ତୁଳନାରେ ଶାସନାତୀତ ଅବାଧ୍ୟ । ନିଜର ଭବିଷ୍ୟତ ପ୍ରତି ଭ୍ରୁକ୍ଷେପ ନକରି ସରକାରଙ୍କର ସମାନ୍ୟତମ ହସ୍ତକ୍ଷେପକୁ ସେ ଆଦୌ ମାନୁନଥିଲେ । ତେଣୁ ସରକାରଙ୍କ ସହ ସଂଘର୍ଷ ହେବା ସ୍ୱାଭାବିକ ।

ଏହାସତ୍ତ୍ୱେ ସରକାର ତାଙ୍କୁ ମୟୂରଭଞ୍ଜ, କେନ୍ଦୁଝରର ମହାରାଜାତୁଲ୍ୟ ମାନ୍ୟତା ଦେବାସହ ପ୍ରଶଂସା ପତ୍ର ଓ ପୁରସ୍କାର ପ୍ରଦାନ କରିଥିଲେ ।

**ସୋମନାଥ ସିଂହଙ୍କ ରାଜାଭିଷେକ :**

ଅନୁଗୁଳ ରାଜା ଜୟ ସିଂହ, ତାଙ୍କର ତିନି ନାବାଳକ ପୁତ୍ର ନୀଳାଦ୍ରି, ମଧୁସୁଦନ ଓ ହରିହର ସାନଭାଇ ଗୋପୀନାଥ ସିଂହ ଓ ସେବକ ଦକ୍ଷିଣ କବାଟ ୧୮୦୯ ରେ ଅଜ୍ଞାତ ଆତତାୟୀ ଦ୍ୱାରା ନିହତ ହେଲେ । ଗୋପୀନାଥ ସିଂହଙ୍କ ବିଧବା ପତ୍ନୀ ସୁଲୋଚନା ଶିଶୁପୁତ୍ର ସୋମନାଥ ସହ ସେହି କାଳରାତ୍ରିରେ ଖସିଯାଇ ପିତ୍ରାଳୟ ନିମାପଡ଼ା ଜମିଦାରଙ୍କ ଆଶ୍ରୟ ନେଲେ । ପୃଥ୍ୱୀସିଂହ ସିଂହାସନ ମାଡ଼ିବସିଲେ ମଧ୍ୟ ବିବାଦ ଲାଗି ରହିଲା । ସରକାର ହସ୍ତକ୍ଷେପ କଲେ, ରାଜପଦ ଉଚ୍ଛେଦ କରି ରାଜ୍ୟକୁ ଖାସ୍ ମାହାଲ କରିବା ସିଦ୍ଧାନ୍ତ ହେଲା । ମାତ୍ର ଶେଷ ମୁହୂର୍ତ୍ତରେ ମାମୁଁଙ୍କ ଆଶ୍ରୟରେ ଥିବା ସୋମନାଥ ସିଂହଙ୍କୁ ଆଣି ତା୦୩/

୧୦/୧୮୧୪ ରେ ଅନୁଗୁଳର ରାଜା ଭାବେ ଅଭିଷେକ କଲେ। ତା.୧୧/୦୮/୧୮୦୦ରେ ଜନ୍ମିତ ସୋମନାଥ ସିଂହ ନାବାଳକ ହେତୁ ରାଜ୍ୟ ମେନେଜର ଦ୍ୱାରା ପରିଚାଳିତ ହେଲା। ସାବାଳକ ହୋଇ ସୋମନାଥ ସିଂହ ଶାସନ ଡ଼ୋର ନିଜ ହାତକୁ ନେଲେ। ୧୮୧୯ ରେ ତାଲଚେର ରାଜଜେମା ପ୍ରୀତି ମଞ୍ଜରୀଙ୍କ ସହ ଶୁଭପରିଣୟ ହେଲା। ରାଜକୀୟ ପ୍ରତିଭା ବିକଶିତ ହେଲା।

**ସୋମନାଥ ସିଂହଙ୍କ ଉତ୍ଥାନ :**

୧. **ଆଠମଲ୍ଲିକ ମେଳି :** ୧୮୨୦ରେ ଆଠମଲ୍ଲିକର ମଲ୍ଲିକ ମାନେ ନିଜ ରାଜାଙ୍କ ବିରୁଦ୍ଧରେ ମେଳି କଲେ। ଭୀତରାଜା ସରକାରଙ୍କ ଶରଣାପନ୍ନ ହେଲେ। ସରକାରଙ୍କ ଅନୁରୋଧ କ୍ରମେ ସୋମନାଥ ଚତୁରତାର ସହ ଉଭୟପକ୍ଷକୁ ତୁଷ୍ଟକରି ଏକ ନିଶ୍ଚିତ ଗୃହ ଯୁଦ୍ଧରୁ ଆଠମଲ୍ଲିକକୁ ରକ୍ଷା କଲେ। କୃତଜ୍ଞତାର ନିଦର୍ଶନ ସ୍ୱରୂପ ଆଠମଲ୍ଲିକ ରାଜା ନିଜ କନ୍ୟାଦାନ ସହ ଚାରିମଲ୍ଲିକ ଅଞ୍ଚଳ ଯୌତୁକ ଦେଲେ। ସର୍କାର ମଧ୍ୟ ପ୍ରଶଂସା ପତ୍ର ସହ ତିନିହଜାର ଟଙ୍କା ପୁରସ୍କାର ଦେଲେ।

୨. **ବୁଢ଼ାପଙ୍କ ଯୁଦ୍ଧ :** ୧୮୨୫ରେ ଢ଼େଙ୍କାନାଳ ରାଜା ଅନୁଗୁଳର ବୁଢ଼ାପଙ୍କ ଦୁର୍ଗ ଆକ୍ରମଣ କଲେ। ଅନୁଗୁଳର ପ୍ରତି ଆକ୍ରମଣରେ ପ୍ରଥମ ଦିନ ହିଁ ଚାରିଶହ ସୈନ୍ୟ ହରେଇ ଛତ୍ରଭଙ୍ଗ ଦେଲେ। ଅନୁଗୁଳ ବିରୁଦ୍ଧରେ ଅଭିଯୋଗ କରନ୍ତେ, ପ୍ରଥମେ ଆକ୍ରମଣ କରିଥିବାରୁ ସର୍କାର ଅଭିଯୋଗ ଗ୍ରହଣ କଲେ ନାହିଁ।

୩. **ହିନ୍ଦୋଳକୁ ସୁରକ୍ଷା :** ୧୮୩୧ରେ ଧନବଳ ଓ ସୈନ୍ୟବଳ ଦେଇ ହିନ୍ଦୋଳକୁ ସୁରକ୍ଷା ଦେଲେ।

୪. ଗାଦିଚ୍ୟୁତ ତାଳଚେର ରାଜାଙ୍କୁ ୧୮୩୬ରେ ପୁନଃ ଗାଦିନାସୀନ କଲେ।

୫. ଡିଗିରିଆକୁ ୧୮୩୭ରେ ବର୍ହିଶତ୍ରୁ ଆକ୍ରମଣରୁ ରକ୍ଷାକଲେ।

ଏହିପରି ଭାବେ ତାଙ୍କ ଯଶ ପ୍ରସାରିତ ହେଲା। ସର୍କାର ପ୍ରଶଂସା ପତ୍ର, ପୁରସ୍କାର ସହ ମହାରାଜା ତୁଲ୍ୟ ସମ୍ମାନ ପ୍ରଦର୍ଶନ କଲେ।

**ସୋମନାଥ ସିଂହ ଙ୍କ ପତନ :**

୧. **ସ୍ୱାଭିମାନ ଓ ସ୍ୱାଧୀନ ଚେତନା :** ସୋମନାଥ ସିଂହ ଇଂରେଜ ଠାରୁ ଆଲେକଜାଣ୍ଡର - ପୁରୁ ସଂପର୍କ ଦାବି କରୁଥିଲେ । ସରକାରଙ୍କର ସାମାନ୍ୟତମ ହସ୍ତକ୍ଷେପକୁ ପ୍ରତିହତ କରୁଥିଲେ । ତେଣୁ ଗୁଣଗ୍ରାହୀ ଇଂରେଜ ତାଙ୍କୁ ଉଚ୍ଚାସନ ଦେବାବେଳେ ସାମ୍ରାଜ୍ୟବାଦୀ ଇଂରେଜ ତାଙ୍କୁ ରାହୁପରି ଗ୍ରାସ କଲା ।

୨. **ପଡ଼ୋଶୀ ରାଜା ମାନଙ୍କ ହୀନ ଷଡ଼ଯନ୍ତ୍ର :** ସୋମନାଥ ସିଂହଙ୍କ ପ୍ରତିପତ୍ତି ଓ ପ୍ରଶଂସା ପଡ଼ୋଶୀ ରାଜା ମାନଙ୍କ ମନରେ ଭୟ ଓ ଈର୍ଷା ଜାତ କଲା । ତେଣୁ ଢ଼େଙ୍କାନାଳ ନେତୃତ୍ୱରେ ହିନ୍ଦୋଳ, ଆଠଗଡ଼, ବଉଦ, ଦଶପଲ୍ଲା, ବଡ଼ମ୍ବା, ଆଠମଲ୍ଲିକ, ସୁକିନ୍ଦା, ଦର୍ପଣୀ, ନରିସିଂହପୁର ଆଦି ରାଜାମାନେ ମିଳିତ ହୋଇ ନାନା ମିଥ୍ୟା ଅଭିଯୋଗ ଚୁଗୁଲି କରି ରାଜା ଓ ସର୍କାର ମଧ୍ୟରେ ଫାଟ ସୃଷ୍ଟି କଲେ ।

୩. **ଦଶପଲ୍ଲାର ମିଥ୍ୟା ଅଭିଯୋଗ :** ଅନୁଗୁଳ ଓ ଦଶପଲ୍ଲା ମଧ୍ୟରେ ସୀମା ବିବାଦ ଥିଲା । ୧୮୩୧ରେ ଦଶପଲ୍ଲା ମିଥ୍ୟା ଅଭିଯୋଗ କଲା ଯେ, ସୋମନାଥ ସିଂହ ତାଙ୍କର ଏକ ଗ୍ରାମ ଲୁଣ୍ଠନ କରିଛନ୍ତି ।

୪. **ମିଥ୍ୟା ନରହତ୍ୟା ଅଭିଯୋଗ :** ୧୮୩୭ରେ କନ୍ଧମେଳି ଦମନରେ ନିଯୁକ୍ତ ସୈନ୍ୟ ୬ଜଣ ନିରୀହ ଲୋକଙ୍କୁ ହତ୍ୟାକରି ଅନୁଗୁଳ ସୀମାକୁ ଫୋପାଡ଼ି ଦେଇ ସୋମନାଥ ସିଂହଙ୍କ ମୁଣ୍ଡରେ ଦୋଷ ଲଦିଦେଲେ ।

୫. **ହିନ୍ଦୋଳ ବିବାଦ :** ୧୮୪୬ରେ ସୋମନାଥ ସିଂହ ହିନ୍ଦୋଳର କୁରୁମିଠାଗ୍ରାମ କିଣିଛନ୍ତି ଦାବିକରି ଦଖଲ କଲେ । ସର୍କାର ତାଙ୍କୁ ତିନି ହଜାର ଟଙ୍କା ଜୋରିମନା ସହ ଏ ଗ୍ରାମ ଛାଡ଼ି ଦେବାକୁ ଆଦେଶ ଦେଲେ । ସେମାନାଥ ସିଂହ ଏହା ଅବଜ୍ଞାକରି କହିଲେ ବଳର ଜବାବ ସେ ବଳରେ ଦେବେ , ତେଣୁ ସର୍କାର ମୁଣ୍ଡ ନୋଇଁଲେ ।

୬. **ପଶ୍ଚିମା ଯାତ୍ରୀମାନଙ୍କୁ ହତ୍ୟାର ମିଥ୍ୟା ଅଭିଯୋଗ :**

୭. **ବଉଦର ଏକ ଗ୍ରାମ ପୋଡ଼ି ଆଦି ମିଥ୍ୟା ଅଭିଯୋଗ :**

୮. **ବିଶ୍ୱାସ ଘାତକତା :** ନିଜ ଦେବାନଙ୍କର ବିଶ୍ୱାସ ଘାତକତା ।

୯. **ଆଣ୍ଟୁଗଣ୍ଠି ବାତ :** ହେତୁ ରାଜା ଅଚଳ ।

୧୧. କନ୍ଧମେଳି : ପାରଳାଖେମୁଣ୍ଡି, ଘୁମୁସର, କନ୍ଧମାଳ, ଦଶପଲ୍ଲା, ବଉଦ ଆଦି ଅଞ୍ଚଳ ମାଳ ଅଞ୍ଚଳ ବା **Agency Area** ଭାବେ ଚିହ୍ନିତ। ଏହି ଅଞ୍ଚଳ କନ୍ଧମାନଙ୍କର ଘନବସତି । ହଳଦୀଚାଷ କନ୍ଧମାନଙ୍କର ମୁଖ୍ୟ ଜୀବିକା। ହଳଦୀ କିଆରୀରେ ନରବଳି (ମେରିଆ) ଦେବା କନ୍ଧମାନଙ୍କର ପୁରାତନ ଧର୍ମପ୍ରଥା । ଏହି ବର୍ବର ପ୍ରଥାକୁ ଉଚ୍ଛେଦ କରିବା ନିମିତ୍ତ ସର୍କାର ବିରାଟ ସୈନ୍ୟବାହିନୀ ନିଯୁକ୍ତ କଲେ। ସେନାଧ୍ୟକ୍ଷ **Agency Officer** କ୍ୟାପଟେନ୍ ମ୍ୟାକ୍ ଫରସନ୍ ଓ କ୍ୟାପଟେନ୍ କେଡ଼େନ ହେଡ୍ ଅତି ଅମାନୁଷିକ ବର୍ବର ଭାବରେ ଅତ୍ୟାଚାର କଲେ। ହତ୍ୟା, ଲୁଣ୍ଠନ, ଧର୍ଷଣ, ମାଡ଼, ଗୃହଦାହ, ବେଠି ଓ ମାଗଣା ରସଦ ଆଦି ଅତ୍ୟାଚାର ହେତୁ ପ୍ରଜାମାନେ ଭିଟାମାଟି ଛାଡ଼ି ସୀମାନ୍ତ ଅନୁଗୁଳ ଜଙ୍ଗଲରେ ଲୁଚିଲେ।(ଘୁମୁସର ରାଜାଙ୍କୁ ୧୮୩୫ରେ ଗାଦିଚ୍ୟୁତ କରିଥିବାରୁ କନ୍ଧମାନେ ବିଦ୍ରୋହ ଆରମ୍ଭ କରିଥିଲେ।)

ଏହି ଅତ୍ୟାଚାର ପ୍ରତିବାଦରେ କନ୍ଧମାନେ ମେଳିକରି ଗରିଲା ଆକ୍ରମଣ କଲେ। ପ୍ରମୁଖ କନ୍ଧନେତା ହେଲେ, ନବଘନ କଅଁର, ଚକରା ବିଷୋୟୀ, ଦୋରା ବିଷୋୟୀ ଆଦି । ବିଚାରବନ୍ତ କମିଶନର ରିକେଟସ୍‌ଙ୍କ ଅନୁରୋଧ କ୍ରମେ ସୋମନାଥ ସିଂହ ଚକ୍ରା ବିଷୋୟୀଙ୍କୁ ନିଜପାଖରେ ରଖିଥିଲେ। ମ୍ୟାକ୍ ଫରସନ୍ ଓ କେଡ଼େନ୍ ହେଡ୍‌ଙ୍କ ବିଶ୍ୱାସ ଘାତକତା ହେତୁ ଚକ୍ରା ବିଷୋୟୀ ଅନୁଗୁଳ ପରିତ୍ୟାଗ କରି କନ୍ଧମେଳିକୁ ତୀବ୍ରତର କରିଦେଲେ।

ଏ ଦୁଇ **Agency Officer** ନିଜର ସମସ୍ତ ହୀନ କର୍ମ ଅନୁଗୁଳ ରାଜାଙ୍କ ମୁଣ୍ଡରେ ବୋଲି ନିୟମିତ ଅଭିଯୋଗ କଲେ ଯେ, ଅନୁଗୁଳ ରାଜା ଗୋଟେ ଲୁଣ୍ଠନକାରୀ, ହତ୍ୟାକାରୀ, ବିଦ୍ରୋହୀ କନ୍ଧମାନଙ୍କର ପୃଷ୍ଠପୋଷକ ଓ ଇଂରେଜ ବିରୋଧୀ।

ଅଭିଯୋଗର ତଦନ୍ତ ରିପୋର୍ଟ :

କ) **କ୍ୟାପଟେନ୍ ଡ଼ନ୍‌ଲପଙ୍କ ତଦନ୍ତ ରିପୋର୍ଟ :** ତା.୦୧.୦୪.୧୮୪୭ ଓ ତା.୦୮.୦୪.୧୮୪୭ । ରାଜା ସଂପୂର୍ଣ୍ଣ ନିର୍ଦ୍ଦୋଷ। ମ୍ୟାକ୍ ଫରସନ୍ ଓ କେଡ଼େନ୍ ହେଡ୍ କରିଥିବା ସମସ୍ତ ଅଭିଯୋଗ ମିଥ୍ୟା ଓ ମନ୍ଦ ଉଦ୍ଦେଶ୍ୟ ପ୍ରଣୋଦିତ।

ଖ) **ବ୍ରିଗେଡ଼ିୟର୍ ଜେନେରାଲ ଡ଼ାଇସ୍‌ଙ୍କ ତଦନ୍ତ ରିପୋର୍ଟ :**

ତା.୨୦.୦୩.୧୮୪୭। ମୋର ଦୃଢ଼ ବିଶ୍ୱାସ ଯେ ମ୍ୟାକଫରସନ୍, କେଡ଼େନ୍

ହେତ୍, ବିରାଟ ସେନା ଥିବା ପର୍ଯ୍ୟନ୍ତ ଏ ଅଞ୍ଚଳରେ ଶାନ୍ତି ପ୍ରତିଷ୍ଠା ଏକ ମରୀଚିକା । ଏମାନଙ୍କ ଅମାନୁଷିକ ଅତ୍ୟାଚାର ହେତୁ ନିରୀହ ପ୍ରଜାଟିଏ ମଧ୍ୟ ଏମାନଙ୍କୁ ଘୃଣା କରେ । ବିଡ଼ମ୍ବନା ଯେ, ଏମାନେ ନିଜର ସମସ୍ତ କୁକର୍ମ ସୋମନାଥ ସିଂହଙ୍କ ମୁଣ୍ଡରେ ଲଦି ଦେଉଛନ୍ତି, ଯଦିଓ ଅନୁଗୁଳ ମାଳ ଅଞ୍ଚଳର ବାହାର ରାଜ୍ୟ । ରାଜା ସଂପୂର୍ଣ୍ଣ ନିର୍ଦ୍ଦୋଷ ।

**ସର୍କାରଙ୍କ ଉଦ୍ଦେଶ୍ୟ ମନ୍ଦ :**

ଡ଼ନ୍‌ଲପ୍ ଓ ଡ଼ାଇସ୍‌ଙ୍କ ରିପୋର୍ଟ ସତ୍ତ୍ୱେ ସର୍କାର ସୋମନାଥ ସିଂହଙ୍କୁ ବ୍ରିଟିଶ ସାମ୍ରାଜ୍ୟବାଦର ପ୍ରତିବନ୍ଧକ ଭାବେ ବିଚାର କରୁଥିଲେ । ପୂର୍ବ ଓ ପଶ୍ଚିମ ଓଡ଼ିଶାର ଡେକ୍‌ଗେଟ୍‌ର ଚାବିକାଠି ସେମାନାଥ ସିଂହଙ୍କ ହାତରେ । ସମ୍ବଲପୁରରେ ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ । ଚିଫ୍ କମିସନର ଗୁପ୍ତ ଚିଠି ଦେଲେ ସୋମନାଥ ସିଂହଙ୍କୁ ହତ୍ୟା ନହେଲେ ମଧ୍ୟ ଗୋପନ ସ୍ଥାନରେ ବନ୍ଦୀକର ।

**ଗଧିଆ-ମେଣ୍ଢାଛୁଆ ନ୍ୟାୟ :**

ତେଣୁ ସର୍କାର ଗ୍ରାଣ୍ଟସ୍ ତଦନ୍ତ କମିସନ୍ ବସାଇଲେ । ରାମା ଶାମା ଦାମାକୁ ଧରିଆଣି ତଦନ୍ତ ପ୍ରହସନ ହେଲା । ରାଜା ପ୍ରତିବାଦ କଲେ ।

**ଅଧୈର୍ଯ୍ୟ ସରକାର :** କମିସନର ଓ ପ୍ରାଦେଶିକ ସରକାରଙ୍କୁ ଉପେକ୍ଷା କରି ସରକାର କମିସନରଙ୍କୁ ନିର୍ଦ୍ଦେଶ ଦେଲେ ଅନୁଗୁଳର ସମସ୍ତ ଦୁର୍ଗ ଧ୍ୱଂସ କର । ସୈନ୍ୟଚାଳନା ଆରମ୍ଭ ହେଲାଣି ।

**ଯୁଦ୍ଧ ଘୋଷଣା :**

ତା.୧୨.୧୨.୧୮୪୭ ରେ ରାଜ୍ୟ ବ୍ୟାଜାପ୍ତକରି ଯୁଦ୍ଧ ଘୋଷଣା କଲେ । ମାନ୍ଦ୍ରାଜ, କଟକ ଓ ସମ୍ବଲପୁରରୁ ସେନା ଆଣି କ୍ୟାମ୍ପବେଲ ଅଧୀନରେ ଗଠିତ **Angul Field Force** ରାଜାଙ୍କର କୃଷ୍ଣଚକ୍ରଗଡ଼ ଆକ୍ରମଣ କଲେ ।

**କୃଷ୍ଣଚନ୍ଦ୍ର ଗଡ଼ :**

ଇଂରେଜର ମନ୍ଦ ଉଦ୍ଦେଶ୍ୟ ପ୍ରତି ରାଜା ସଚେତ ଥିଲେ । ୧୮୩୧ରେ ବାନୋର ପର୍ବତ ମାଳା ଭିତରେ ଦୁର୍ଭେଦ୍ୟ କୃଷ୍ଣଚକ୍ର ଗଡ଼ ନିର୍ମାଣ କରି ପ୍ରତି ଆକ୍ରମଣ ପାଇଁ ପ୍ରସ୍ତୁତ ଥିଲେ ।

**କପଟ ସନ୍ଧି :**

- ପ୍ରଥମ ଦଶଦିନ ଯୁଦ୍ଧରେ ପରାସ୍ତ ହୋଇ କ୍ୟାମ୍ପବେଲ୍ ନାଗପୁର ରାଜା ଓ ବାମଣ୍ଡା

ରାଜା ମଧ୍ୟସ୍ଥତାରେ ଆଉଁଳୀନଦୀ କୂଳରେ ସନ୍ଧି ପ୍ରସ୍ତାବ ଦେଲେ। କପଟତାର ଆଭାସ ପାଇ ରାଜା ଖସିଗଲେ।

**ହିନ୍ଦୁଧର୍ମ ଢ଼ାଲ :**

ହତାଶ କ୍ୟାମ୍ପବେଲ ହିନ୍ଦୁଧର୍ମଧାରଣାକୁ ଢ଼ାଲକରି ପଲପଲ ଗୋରୁ ପଛରେ ଦଳଦଳ ସୈନ୍ୟ ଚାଳନା କଲେ। ସମ୍ମୁଖରେ ଗୋମାତା, ପୃଷ୍ଠରେ ବିଶ୍ୱାସଘାତକ, ଗୋହତ୍ୟାପାପ ଭୟରେ ରାଜା ନିରସ୍ତ, ଅସ୍ତତ୍ୟାଗ, ଧ୍ୟାନମଗ୍ନ। ଗୃହଶତ୍ରୁମାନେ ରାମଲକ୍ଷ୍ମଣ ତୋପ ସର୍ଦ୍ଦାର ମଣି ସାନ୍ତରାୟକୁ ନିଶାଗ୍ରସ୍ତ କରି ତୋପରେ କୋଇଲାଗୁଣ୍ଡ ପଙ୍କ ଭରି ଦେଲେ। ତା.୦୧.୦୨.୧୮୪୮ରେ ଦୁର୍ଗର ପତନ ହେଲା। ତା.୧୫.୦୨.୧୮୪୮ରେ ରାଜା କଟକ ଓ ତାପରେ ହଜାରିବାଗକୁ ସ୍ଥାନାନ୍ତରିତ ହେଲେ। ହଜାରୀବାଗ ବେରେକ ନିକଟସ୍ଥ ଏକ ସ୍ୱତନ୍ତ ବଙ୍ଗଳାରେ ଗୃହବନ୍ଦୀ ହେଲେ। ତା.୦୨.୦୬.୧୮୫୩ରେ ଏ ମହାପୁରୁଷଙ୍କର ଜୀବନଦୀପ ଲିଭିଗଲା।

**ସୋମନାଥ ସିଂହଙ୍କ ଶାସନ :**

ସୋମନାଥ ସିଂହ ଥିଲେ ପ୍ରଜାବତ୍ସଳ ସୁଶାସକ। ନବରତ୍ନ ମନ୍ତ୍ରୀ ପରିଷଦର ପରାମର୍ଶକ୍ରମେ ଶାସନ ପରିଚାଳନା କରୁଥିଲେ। ନିଜେ ସୁକବି, କବି ପଣ୍ଡିତ , ଗୁଣୀ , ବିଦ୍ୱାନ ମାନଙ୍କୁ ପ୍ରୋତ୍ସାହିତ କରୁଥିଲେ। ତାଙ୍କ ରାଜତ୍ୱରେ ଅନୁଗୁଳ ଗାୟକ ପକ୍ଷୀ ମାନଙ୍କ ନୀଡ଼ ବା **Nest of Singing Birds** ଭାବେ ଖ୍ୟାତ ଥିଲା। ତାଙ୍କର ଶୌର୍ଯ୍ୟବୀର୍ଯ୍ୟ , ଦୟା, ଦାକ୍ଷିଣ୍ୟ ସମ୍ବଳିତ ନାନା କୀର୍ତ୍ତିଗାଥା ଅନୁଗୁଳରେ ଏବେ ସୁଦ୍ଧା ଜନସାଧାରଣରେ ପ୍ରଚଳିତ ଏବଂ ଆଜି ସୁଦ୍ଧା ଅନୁଗୁଳ ବାସୀଙ୍କର ତାଙ୍କ ପ୍ରତି ଗଭୀର ସ୍ନେହଶ୍ରଦ୍ଧା ସହାନୁଭୂତି ପରିଲକ୍ଷିତ ହୁଏ। (କମିସନର ଐତିହାସିକ ସୁଧାକର ପଟ୍ଟନାୟକ।)

**୧୮୫୧ ତୁମ୍ବିତୁଫାନ :**

ଅନୁଗୁଳର ଅନେକ ଶ୍ରଦ୍ଧାଳୁ ଦୁର୍ଗମପଥ ଅତିକ୍ରମ କରି ହଜାରୀବାଗରେ ତାଙ୍କ ଦର୍ଶନ କରୁଥିଲେ। ୧୮୫୧ରେ ତାଙ୍କର ଜଣେ ଉପଦେଷ୍ଟା ଜରାଓରପୁର ଶାସନ ନିବାସୀ ପଣ୍ଡିତ ଜଗବନ୍ଧୁ ସଦସ୍ୟ ଶର୍ମା ଗୟା ତୀର୍ଥାଟନ ଆଳରେ ହଜାରୀବାଗରେ ତାଙ୍କୁ ସାକ୍ଷାତକରି ତାଙ୍କ ସ୍ୱହସ୍ତଲିଖିତ ଏକ ଗୁପ୍ତ ପତ୍ର ଆଣିଲେ, "ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ଜାରିରଖ।" ତତ୍କାଳୀନ ଅନୁଗୁଳ ତହସିଲଦାର ବ୍ରହ୍ମାନନ୍ଦ ଦାଶ ଏ ଚିଠି ନଦେଖି ମଧ୍ୟ ତୁମ୍ବିତୁଫାନ

ସୃଷ୍ଟି କରିଦେଲେ । ସରକାର ସୋମନାଥ ସିଂହଙ୍କ ପ୍ରହରୀ ବ୍ୟବସ୍ଥା କଡ଼ାକଡ଼ି କରି ସାକ୍ଷାତକାର ନିଷିଦ୍ଧ କରିଦେଲେ ।

ସୋମନାଥ ସିଂହଙ୍କ ମୃତ୍ୟୁ ଏକ ଶହୀଦ, ସ୍ୱାଧୀନତା ସଂଗ୍ରାମୀର ମୃତ୍ୟୁ । ତାଙ୍କ ଅବର୍ତ୍ତମାନରେ ଅନୁଗୁଳ ଗୋଟିଏ ଶତାବ୍ଦୀ ପର୍ଯ୍ୟନ୍ତ ନିର୍ଯ୍ୟାତିତ ହେଲା । ସମସ୍ତ ଦୁର୍ଗ ଧ୍ୱଂସ କରାଗଲା । ରାଜା ପ୍ରାସାଦ ଧ୍ୱସ୍ତ, ଜମିବାଡ଼ି ବିଶ୍ୱାସ ଘାତକ ମାନଙ୍କୁ ବାଣ୍ଟି ଦିଆଗଲା । କଟକ ତୁଳସୀପୁରସ୍ଥ ପାଞ୍ଚଏକର ଜମିରେ ନିର୍ମିତ ତାଙ୍କ ପ୍ରାସାଦ କମିସନର ଅଫିସର କଣେ କିରାନୀ ହଡ଼ପ କଲେ । ଏହି କିରାନୀଙ୍କ ନାତି ଓଡ଼ିଶାର ଜଣେ ବିଶିଷ୍ଟ ବ୍ୟକ୍ତି ଦୁଃଖର ସହ ପ୍ରକାଶକରି ପ୍ରାୟଶ୍ଚିତ ସ୍ୱରୁପ ଅନୁଗୁଳର ସେବାକରିଛନ୍ତି । ରାଜ ସେବକ, ବିଶ୍ୱସ୍ତ, ପ୍ରମୁଖ ବ୍ୟକ୍ତିମାନଙ୍କୁ ଫାଶି, କଳାପାଣି , ଅବା ଆଜୀବନ କାରାଦଣ୍ଡ ମିଳିଛି । ଜମିବାଡ଼ି ଉଚ୍ଛେଦ , ପରିବାର ଉଚ୍ଛନ୍ନ ହୋଇଛନ୍ତି ।

ସୋମନାଥ ସିଂହଙ୍କ ଆଦର୍ଶ, ଦେଶ ମାତୃକା, ସ୍ୱାଭିମାନର ପ୍ରସାର ହେଉ । ତାଙ୍କ ବଳିଦାନର ସ୍ମାରକୀ ସ୍ୱରୁପ ଅନୁଗୁଳ ସରକାରୀ ମହାବିଦ୍ୟାଳୟ ତାଙ୍କ ନାମରେ ନାମିତ ହେଉ । ଅନୁଗୁଳର ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କର ଏହି ଦାବୀ ୧୯୯୪ରୁ ସରକାରଙ୍କ ନିକଟରେ ପଡ଼ି ରହିଛି । ଐତିହାସିକ କୃଷ୍ଣଚକ୍ରଗଡ଼, ଟୁମୁଣୀର କଳାପାଟ, କୁକୁଟେଶ୍ୱର ପୀଠ, ପୁରୁଣାଗଡ଼ ପର୍ଯ୍ୟଟନ ସ୍ଥଳରେ ପରିଣତ ହେଉ । **ଅନୁଗୁଳ ଜିଲ୍ଲାର ନାମ ଜିଲ୍ଲା ସୋମନାଥ ସିଂହ ଜଗଦେବ ହେଉ । ଏହା ହେବ ଏହି ବୀର ଶହୀଦ୍‌ଙ୍କ ପ୍ରତି ଆମର ନମ୍ରକମ୍ର ଶ୍ରଦ୍ଧାଞ୍ଜଳି ।**

ଏହା ହିଁ କର୍ତ୍ତୃପକ୍ଷଙ୍କ ନିକଟରେ ବିନମ୍ର ନିବେଦନ ।

**ମହାରାଜା ସୋମନାଥ ସିଂହ ଜଗଦେବ ସ୍ମୃତି କମିଟି, ଅନୁଗୁଳ**

(ସାହାଯ୍ୟ- ଟ.୨.୦୦)